# କାଳୀୟ ଦଳନ ।

ଉତ୍ତର ।





ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

# କାଳୀୟ ଦଳନ ।

( ନାଟକ )

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ବି, ଏ,

ପ୍ରଣୀତ ।



ଗୋପିନାଥ ପ୍ରେସ

ଭଦ୍ରକ ।

ମୂଲ୍ୟ ଛଅଣା ମାତ୍ର ।

ପ୍ରକାଶକ

ଶ୍ରୀ ମଦନ ମୋହନ ମହାପାତ୍ର

୧୯୩୪

( ପ୍ରଥମ ସଂସ୍କରଣ )

ମୁଦ୍ରାକର

ଶ୍ରୀ ଲକ୍ଷ୍ମୀ କାନ୍ତ ମହାପାତ୍ର ବ,ଏ,

ଏହି ଆଧୁନିକ ରୁଚିସଙ୍ଗତ ନାଟକଟି "ଗୋପିନାଥ ସଙ୍ଗୀତ ସମାଜ" ଦ୍ୱାରା ଅଭିନୀତ ହୋଇ ସମଗ୍ର ଉତ୍କଳରେ ଖ୍ୟାତି ଲାଭ କରି ଅଛି । ଅନେକ ସାହିତ୍ୟ ରସିକ, ନାଟ୍ୟକାର ଓ ସଙ୍ଗୀତସେବୀଙ୍କ ଅନୁରୋଧରେ ଏହାକୁ ପ୍ରକାଶ କଲି । ଆଶାକରେଁ ମୋର ଶ୍ରମ ସଫଳ ହେବ ।

ବିନୀତ

ପ୍ରକାଶକ ।

| ନଟ | ନଟୀ |
|---|---|
| ନନ୍ଦ—ବ୍ରଜରାଜ | ଯଶୋଦା—ବ୍ରଜରାଣୀ |
| କୃଷ୍ଣ— ,, ପୁତ୍ର | ଗୋପ କନ୍ୟାଗଣ |
| ବଳରାମ, ସଖାଗଣ, | ନୀଳା—କାଳୀୟ କନ୍ୟା |
| କଂସ—ମଥୁରା ରାଜ | ସୁକେଶୀ— ,, ପତ୍ନି |
| ମନ୍ତ୍ରୀ, ଡ଼ଗର, ଗରୁଡ଼ | ରାଜଲକ୍ଷ୍ମୀ, ନାଗବାଳ୍କାଗଣ |
| କାଳୀୟ—ନାଗରାଜ | |
| ନାଗ ସେନାଗଣ, | |



# କାଳୀୟ ଦଳନ ।



## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ — ରାଜବାଟି



( କଂସ ଓ ଦୂତ )

କଂସ — କି କହିଲୁ ଦୂତ, ଏଯେ ଆଶ୍ଚର୍ଯ୍ୟ କାହାଣୀ !
ବାଳକ ପ୍ରତାପ ତୁଲ୍ୟ ହୁଅଇ ପ୍ରତ୍ୟକ୍ଷ ।
ଦୂତ — ସତ୍ୟ ପ୍ରଭୋ, ଦୃଢ଼ ସତ୍ୟ, ନିଶ୍ଚିତ ବାରତା ।
କଂସ — ଜାଣୁ କିରେ ଦୂତ ତୁହି,
ଦୌତ୍ୟ କର୍ମ କେଡ଼େ ଗରୀୟାନ,
ପ୍ରକୃତ କଠୋର ?
ଦୂତ ଅଟେ ରାଜାଙ୍କର ନୟନ ଦ୍ୱୟ,
ଦୂତ ହସ୍ତେ ଭୂପାଳର ଜୀବନ ଯଷ୍ଟିକା ।
ଦୂତ ଯଦି କରେ ଭୁଲେ ସତ୍ୟ ଅପଳାପ,
ଅଣୁ ମାତ୍ର ନ୍ୟୂନାଧିକ୍ୟ କଲେ ବାର୍ତ୍ତାର,
ଜାଣୁଛ ତାହାର କିବା ବିଷମୟ ଫଳ,
ବଶ୍ୟା କି ତୁହିର କେତେ ଘୋର ଯନ୍ତ୍ରଣା !
ଦୂତ — ଜାଣେଁ ପ୍ରଭୋ, ଦୌତ୍ୟ କର୍ମେ ବୃଦ୍ଧ ହେଲି ଅଛି,
ଦୂତ ହେଲେ ଅବିଶ୍ୱାସୀ, ଘଟିବ ପ୍ରମାଦ ।
କଂସ — କହ ତେବେ, କହ ଦୂତ, କହ ସତ୍ୟ କଥା,
କହ ପୁନର୍ବାର ।

ଦୂତ-- ଅଦ୍ଭୁତ ସେ କଥା ପ୍ରଭୋ ।
ଯକ୍ଷ, ରକ୍ଷ, ବିଦ୍ୟାଧର, ଗନ୍ଧର୍ବ, କିନ୍ନର
ଯେତେକ ଦେବର୍ଷି ସଙ୍ଗେ ଅମର ମଣ୍ଡଳୀ,
ଏକାଗ୍ର ସେ ଗୋପବାଳେ ବେଢି ଚୌପାଖେ
ଭକ୍ତି ଭରେ କର ଯୋଡ଼େ ସ୍ତବ ପଢେ ରତ ।
ବାସୁକୀ କରଇ ସ୍ତୁତି ସହସ୍ର ବଦନେ
ସଙ୍ଗେ ନାଗଗଣ, ଯେତେ ପାତାଳ ନିବାସୀ ।
ଆନନ୍ଦେ ଗଦ୍ଗଦ ହୋଇ ଜୟ ଶ୍ରୀ ଶ୍ରୀମୁଖର
ବରୁଣ ଦେବତା, ଯେଣ୍ଡେ ପ୍ରାପ୍ତ କୋଟି ନିଧି ।
ଅର୍ଘ୍ୟଥାଳୀ କରେ ଧରି ବରୁଣ ସୁନ୍ଦରୀ
ବନ୍ଦାପନା ରତ ଯେନି ପୁର ନାରୀଗଣ ।
ମଙ୍ଗଳ ସଙ୍ଗୀତ ନାଦେ କମ୍ପିତ ଦିଗନ୍ତ;
ଉଚ୍ଛୁଳଇ ପାରାବାର ତରଙ୍ଗ ହିଲ୍ଲୋଳେ ।
କଂସ— ଏ କି ମାୟା ଦୂତ ? କିବା ଅଳିକ କାହାଣି ?
ଛିଦ୍ରାନ୍ବେଷୀ ଅନ୍ତରର କପୋଳ କଳ୍ପନା ?
ଦୂତ— ନୁହଇ କଳ୍ପନା ପ୍ରଭୋ, ସତ୍ୟ ଏ ଘଟନା,
ସତ୍ୟ ଯଥା ଚନ୍ଦ୍ର ସୂର୍ଯ୍ୟ, ଦିବସ, ଶର୍ବରୀ ।
କଂସ — (କ୍ଷଣ କାଳ ରହି) ଗୁପ୍ତ କଥା କାହା ଆଗେ
ନ କର ପ୍ରକାଶ;
ଯାଅ ଦୂତ ନିଜାବାସେ ବିଶ୍ରାମ କାରଣେ ।
(ଦୂତର ପ୍ରସ୍ଥାନ)
(ସ୍ୱଗତ) ନିଶ୍ଚେଷ୍ଟତା, ନିଶ୍ଚେଷ୍ଟତା ?
କାତରତା ନାମାନ୍ତର ଅଟେ ନିଶ୍ଚେଷ୍ଟତା?
ଅପେକ୍ଷା ? ଅକାରଣ ଅପେକ୍ଷା ତ ଦୁର୍ବଳର ଢାଳ;

ଅଶୁ କର୍ମେ ତତ୍ପରତା ସିଦ୍ଧିର ଲକ୍ଷଣ;
ବିଳମ୍ବରେ ନିର୍ବୋଧର କ୍ଷତି ସୁନିଶ୍ଚୟ ।
( ହଠାତ୍ ବ୍ୟଗ୍ର ହୋଇ ଉଚ୍ଚ ସ୍ୱରେ )
ଦୂତ, ଦୂତ—
( ଦୂତର ପୁନଃ ପ୍ରବେଶ )
ଏହି କ୍ଷଣେ ଯାଅ ତୁମ୍ଭେ ଗୋକୁଳ ନଗରେ
ଅତି ତ୍ୱରା କରି;
[illegible] ବିଳମ୍ବ ହେଲେ ହେବ ସର୍ବନାଶ ।
ଦୂତ— ରାଜ କାର୍ଯ୍ୟେ ତତ୍ପରତା ଅଭ୍ୟାସ ଦୂତର;
କହନ୍ତୁ ଆଦେଶ ପୁଣି ଯିବ ଏହିକ୍ଷଣି ।
କଂସ— ଶୁଣାଇବ ଗୋପେନ୍ଦ୍ର ନନ୍ଦରାଜେ ଯାଇ
ଅତି ବେଗେ ରାଜପୁରେ ଆମ୍ଭର ଆଦେଶ ।
କାଳୀ ଦହୁଁ ଶତ ଭର ତୋଳି ଶତଦଳ
କାଲି ପ୍ରାତେ ଭେଟିବେ ସେ ଆମ୍ଭ ଶ୍ରୀ ଛାମୁରେ ।
ଅତି ପ୍ରୟୋଜନ ଦୂତ; ଏହା ହେଲେ ଅନ୍ୟଥା
ଦଣ୍ଡମଧ୍ୟ ପ୍ରକାର ହୋଇବ ନିଶ୍ଚୟ ।
ବୁଝିଲ କି ଦୂତ ? ତୁମ୍ଭେ ପ୍ରବୀଣ ଏ କର୍ମେ ।
ଦୂତ— ଆଜ୍ଞା ମହାରାଜ ।
କଂସ— ଏବେ ଯାଅ ତ୍ୱରା କରି—
( ଦୂତର ପ୍ରସ୍ଥାନ )
(ସ୍ୱଗତ) ଅକ୍ଷୁଣ୍ଣଂ, ଅକାଟ୍ୟ, ଏହି କଂସର କୌଶଳ ।
ଦୈତ୍ୟ ଗୁରୁ ଶୁକ୍ର ନୀତି ସମ
ଅଭେଦ୍ୟ କଠୋର !
ଶଙ୍କରର ଶତଦଳ କେ ପାଇବ କାହୁଁ

# କାଳୀୟ ଦଳନ ।

## ( ଦ୍ୱିତୀୟ ଦୃଶ୍ୟ )



ଶ୍ରୀକୃଷ୍ଣ ଗୀତଗାନ୍ତେ ପ୍ରବେଶ କଲେ ।

ସିନ୍ଧୁ ଖମ୍ବାଜ—ଏକତାଳି

ଦେଖ ସ୍ୱର୍ଣ୍ଣ ରେଣୁ ଝଡ଼ାଏ ଭାନୁ କରେ ପରକାଶି ।
ଚକ ଚନ୍ଦ୍ର ମେଘ ଦଳ ଆସେ ଭାସି ଭାସି । ଘୋଷା ॥
ଶିଶିର ସିକ୍ତ ହରିତ ପତ୍ର ମଞ୍ଜୁଳ ତାଳେ ତାଳେ,
ରଙ୍ଗ ଲଗାଅ ମୁକ୍ତାଫଳ ସଜାଇ ମାଳେ ମାଳେ,
ଛୁଇଁ ଦେଉଛି କନକ କାନ୍ତି କେଉଁ କୁହୁକୀ ଆସି ।
ଢାଳି ଦେଉଛି ମଧୁର ଗନ୍ଧ ମୁଗ୍ଧ ଅନ୍ତରେ,
ବୋଳି ଦେଉଛି ସୁନେଲି ରଙ୍ଗ ଦିଗ ଦିଗନ୍ତରେ,
ଛନ୍ଦେ ଛନ୍ଦେ ଉଠାଇ ତାନ,
ଗାଏ ଭରତଅ ପ୍ରଭାତ ଗାନ,
ଫୁଟି ଉଠୁଛି ଚିତ୍ତ ସରେ ପଦ୍ମ ରାଶି ରାଶି ।

(ଗୀତାନ୍ତେ ମଧୁମଙ୍ଗଳଙ୍କ ପ୍ରବେଶ)

ମଧୁ— ବାହ୍ୱା ବା, କହ୍ନେଇ, ଆଜନ୍ତ ଭାରି ଫୁର୍ତ୍ତି; କି, ଆଜ ଅଧୁଆ ମୁହଁରେ ସଖାଙ୍କୁ ଉଠି କରୁ ଚାଲଣା ମାଲ ପେଟ ଗଲଣି କି ?

କୃଷ୍ଣ— ଛିଏ ମଧୁ ! ଫୁର୍ତ୍ତି କଣ ଖାଲି ପେଟରେ ମାଲ ପଡ଼ିଲେ ହୁଏ, ଆଉ କେଉଁଥିରେ ହୁଏ ନାହିଁ ।

ମଧୁ— ମୁଁ ତ ଜାଣେ ସେତିକି ! ମୋର ଯେଉଁ ଦିନ ରାଜକୀୟ ଭୋଜନଟା ପଡ଼ି ଯାଇ ଥିବ ସେ ଦିନ ମୋତେ ଚଉଦ ଭୁବନ ଦିଶିଯାଏ ।

କୃଷ୍ଣ— ତା, ହଉଥିବ ଏବା। ବ୍ରାହ୍ମଣେ ଯେଉଁ ଛୁଆ ତ ଆଜି କାଁଣ ଜାଣନ୍ତି ନାହିଁ।

ମଧୁ— ଆଜ ଗଲ୍ପେ, ପିଲାରେ କେଁ ଚେକ୍କ ମାଟିଅ ଭଳି ଚାଣ୍ଡ୍ରି!—ନା!

(ଯଶୋଦା ପ୍ରବେଶ କଲେ)—

ଯଶୋଦା—କାହିଁରେ ଜଗନ୍ନାଥ, ମଧୁ, ସକାଳୁଁ ହାରୁ କାଳ ଲାଗିଲା ନା କଣ? ହେଉ ମଧୁତ ସଜ ହୋଇ ବାହାରିଲଣି। କହ୍ନେଇକୁ ଖୋଜି ଖୋଜି ପାଉ ନାହିଁ। ଆ, ଆ, ବାପ, ତୋ ତେ ବେଶ କରି ଦିଏ।

(ଗୀତାନୁସାରେ ଯଶୋଦା ବେଶ କରିବାକୁ ଲାଗିଲେ)—

କାଫି-ଏକତାଲି

କୃଷ୍ଣ— ବାନ୍ଧ ଦେ ମା ଶିରେ ମୟୂର ଚୂଳୀ
ଧବଳୀ ଶ୍ୟାମଳୀ ଦେଇ ହମ୍ବା ରଡ
ଡାକିଲେଣି ମୋତେ ହୋଇ ଆକୁଳ। ଘୋଷା।
ସଜାଇ ଦେ ମାଗୋ ଅଳକା ତିଳକା,
ଭାଲେ ଦେଇ ଗୋରୁ ଗୋରଚନା ଟୀକା,
(ମୋର) ପ୍ରିୟ ସଖା ଗଣ ସୁବଳ, ସୁଦାମ
(ଅଛି) ଦାଣ୍ଡ ଦୁଆରରେ ହେଲେଣି ରୁଣ୍ଡ।
ପାଞ୍ଚଣି ମୁରଲୀ ଦେଇ କରେ ମୋର,
ପିନ୍ଧାଇ ଦେ ମାଗୋ ଚରଣେ ନୂପୁର,
ରୁଣୁ ଝୁଣୁ ଝୁଣୁ ନାଚି ନାଚି ନାଚି,
ଯାଉଛି ଯମୁନାତଟେ ଖେଳିବି ଖେଳ।
ମୁରଲୀ ବଜାଇ ରାମ ଭାଇ ସନେ,
ଗୋଧନ ଚରାଇ ବୁଲିବି ମୁଁ ବନେ,

( ବୃନ୍ଦାବନେ ଘୋ )

(ମୋର) ମନକୁ ପଡ଼ୁଲଣି    ନିକୁଞ୍ଜ କାନନ,
ମନେ ପଡ଼ୁଲାଣି ଯମୁନା କୂଳ ।
ପିନ୍ଧାଇ ଦେ ମାଗୋ ଭିଡ଼ ପୀତ ପଟା,
ଚୂଡ଼ା ପରେ ଦେଇ ଗୁଞ୍ଜାମାଳ ବେଢ଼ା,
କ୍ଷୀର ନବନୀତ    ଦଧି ମା ସଜାଡ଼,
ବେଳୁଁ ବେଳୁଁ ଗଡ଼ ଯାଉଛି ବେଳ ।

( ନନ୍ଦ ଘରଅଡ଼ୁ ପ୍ରବେଶ ହେଲେ )

ନନ୍ଦ— କି ଗୋ ଯଶୋଦେ, ପୁଅ ଶିରପାରେ ତ ହୁରୁ ଲାଗି ଯାଉଛି! ତେବେ ଅନନ୍ଦରେ ଅଛ କାହାର କ୍ଷୀର ଖଣ୍ଡନା ?

ଯଶୋଦା—(ହସି) ତା ସତ ତ ! କିନ୍ତୁ କେଉଁଙ୍କର ଏ ପୁଅରେ ଲୁଗ କାହିଁ ଅଛି ? ତୁମେ କଣ କୋଳ କରି ଦେଇ ପାରିବ ନା ଧରି ଲବଣୀ ଖୁଆଇ ଦେଇ ପାରିବ?

ନନ୍ଦ— ଅମେ ପୁରୁଷ କନ୍ଧ ହୋଇଁ ବୋଲି କଣ ଏତେ ଅପରାଧ ହେଲୁ ?

ଯଶୋଦା—ହେଉଛିତ । ଏ ଜନ୍ମରେ ଠାକୁରଙ୍କ ତ୍ରାକ ଯେପରି ଅଲ ଜନ୍ମକୁ ତମେଭୁ ସ୍ତ୍ରୀ-ଜନ୍ମ ହେବେ ।

ନନ୍ଦ— ଅଛୁ, ସ୍ତ୍ରୀ ଲୋକଙ୍କ କାମ ଯାଇ ଅମେ କରି ନ ପାରୁଁ । କିନ୍ତୁ ଦେଖିବାର ତ ଅଧିକାର ଅଛି ଯେ । ନା ?

ଯଶୋଦା—କିଏ ମନା କଲାକି ଦେଖିବାକୁ ? ଦେଖ ନାହିଁ, ଅଜ ନୀଳମଣି ମୋର କେଡେ ସୁନ୍ଦର ଦିଶୁଛି ।

ନନ୍ଦ— ହଁ, ସେଥିପାଇଁ କାରିଗର ତୁମେ । କିନ୍ତୁ ତୁମେ ଏତେ ଯତ୍ନ କରି ସଜାଇ ଦେଲେ କଣ ହେବ, ଅଜ ଘଡ଼ିକେ ପୁଣି ଧୂଳି ଧୂସର ହୋଇଥିବ ।

ଯଶୋଦା— ସେ କଥା ପୁଣି କହୁଛ ! ମାଡ ଖୋଜ, ଧୂମ ଧୂଳି ଓ ତାର ମୁହଁରେ ; ସବୁ ଭିତରେ ଦେଖୁଥାଇ କଣ ହୁଏ ।

ନନ୍ଦ— ମୁଁ କହେ, ରାଣୀ, ଏସବୁ ଟିକିଏ ବଅଁଳ ପିଲା, ସେ କରୁଛି କଣ ବୁଝନ ! ପ୍ରଥମେ ସେହି ପୁତନା କଥା କହିଲ !

ଯଶୋଦା— ରାମ, ରାମ, ସେ ଡାହାଣୀଟା କଥା କୁହ ନାହିଁ । ପିଲା ମୋର ତରବ ଏହ୍ୱଷତ୍ରୀ । ସା ଓଠୀ ଘଡଛ ଧର୍ମ ଦେବତା ରକ୍ଷା କରିଛନ୍ତି ସେ ହରି ।

ନନ୍ଦ— ସେ କଥା ଗଲା, ସେ ଯମଳାର୍ଜୁନ ଉପାଡ଼ିବା କଥା ?

ଯଶୋଦା— ହରି, ହରି । ମୁଁ ଓଷ୍ଟ୍ରାଳୀ କ'ଣ ଜାଣିଛି ସେ ଏତେ ଏତେ ମେରୁ ପରି ଦାରୁ ସେ ତାକୁ ... ଥିଲା ସେହି ଗଛ । ସେ ଧନ ମହାଦେବ ଏଥା ରକ୍ଷା କଲେ ।

ନନ୍ଦ— ଅଚ୍ଛା ତା ଯାଉ ସେତେ; ସେ ଧନ ସେ ପାଟିଟାକୁ ମେଲି କରି ଚଉଦ ଭୁବନ ଦେଖାଇଲା ।

ଯଶୋଦା— ସେହି ଧନ ଏକା ମୋର ନୁହେଁ ତାକୁ କେତେ ଦେବତା, କି ଭୂତ ପ୍ରେତ ଗ୍ରହି ଥିଲା । ମା କାଳୀଙ୍କ ଠାଏଁ କେତେ ମାନସିକରେ ଯାଇ ସେ ଭୂତ ଛାଡ଼ିଲା ।

ନନ୍ଦ— ହଉ, ସବୁ କଥା ଗଲା । ଗୋବର୍ଦ୍ଧନ ଟେକିବାଟା ତ ତା' ଆଖିରେ ଦେଖିଛ । ସିଏ ତେବେ କ'ଣ ?

ଯଶୋଦା— ସତେ ସେ ଗୁଡାକ ତୁମେ କିଛି କୁହ ନାହିଁ । କଥା ଶୁଣି ଶୁଣି ଏଣେ ମୋ କାନ ଝଣଝଣ ହେଲା ଯେ । ସେଣେ କହ୍ନେଇର ଗୋଠ ବେଳ ଉଚ୍ଛୁର ହେଉଛି ।

ନନ୍ଦ— ମୋର ବଡ ସନ୍ଦେହ ହେଉଛି, ରାଣୀ, କୃଷ୍ଣ କିଏ ? ଯାହାକୁ ତୁମେ ପୁଅ ବୋଲି ଅଞ୍ଚଳରେ ବାନ୍ଧ ରଖିଛ ତାକୁ ଚିହ୍ନିଛକି ଯଶୋଦେ ?

ଯଶୋଦା—କହେଇ ମୋର ଗୋପରେ ତାଙ୍କ ଭଳି, ଦେଖି
ଧିକାରେ ରହି ରହି, ନନ୍ଦା ଭୁଲେ ଏହା ଛଡା
ମୁଁ ଅଉ କିଛି କାରଣ ନାହିଁ । ଅଉ ଏତିକି କହଣ
ଯେ ତାଙ୍କୁ ଦଣ୍ଡେ ନ ଦେଖିଲେ ମୋତେ ମହାକଷ୍ଟା
ଯାକ ଅନ୍ଧାର ଦିଶିଯାଏ ।

ନନ୍ଦ— ଧନ୍ୟ ମୁଗ୍ଧା ନାରୀ ! ପିତା ହେବାଠାରୁ ଜନନୀ ହେବା
କେତେ ସୌଭାଗ୍ୟ !

( କଂସର ଦୂତର ପ୍ରବେଶ ହେଲେ )

ଦୂତର—ନନ୍ଦରାଜ—

କଂସର ଦୂତର ମୁହିଁ;
ଅଧିଅଛି ତୁମ୍ଭଠାକୁ ଆଜ୍ଞାପତ୍ର ନେଇ ।
ରାଜେନ୍ଦ୍ର ମହୀପତି ମଣି ଛତ୍ରପତି କଂସ,
ସବୁ ଶ୍ରେଷ୍ଠ ମଥୁରା ନଗରେ,
ଭରତନ୍ତ୍ର ପୂଜା ଅଯୋଜନ;
କାଲି ପ୍ରାତେ ଶତସ୍ତ୍ର ପଦ୍ମ ଶୋଭନ
ଦେବ କାଳୀ ହ୍ରଦୁ ନେଇ ଭେଟିବ ଯୂପରେ ।
ରାଜାଙ୍କ ଅବଜ୍ଞା ହେଲେ ତାଙ୍କ ପ୍ରମାଣରେ
ରାଜ ଦଣ୍ଡେ ହେବ ତୁମ୍ଭେ ସପରିବାର ବିନାଶ ।।
କର ପ୍ରାଣ ପଣ,
ରଖ ଯତ୍ନ ରାଜାଙ୍କ ପାଳନ ।
ଅନୁଦିନ ମଧ୍ୟେ ହୁଅ ପଦ୍ମ ପ୍ରସ୍ତୁତ;
ସାବଧାନ ! ଅନ୍ୟଥାରେ ଘଟିବ ଅନର୍ଥ ।।

( ପତ୍ର ଦେଇ ପ୍ରସ୍ଥାନ )

ନନ୍ଦ— ଏ ପୁଣି କି ବଡ଼ ଚିନ୍ତା ଯଶୋଦେ ! ଏ କି କୌଶଳ ! ବିପଦପରେ ଏ ପୁଣି ବିପଦ ! ଏଥିରୁ ରକ୍ଷା ପାଇବାର ଆଉ କୌଣସି ଉପାୟ ଦେଖୁନାହିଁ ।

ଯଶୋଦା— କଣ କହୁଛ? ମୁଁ ଏ ଉତ୍ତରର କଥା କିଛି ବୁଝି ପାରୁନାହିଁ ।

ନନ୍ଦ— ବୁଝିଲ ନାହିଁ ! କଂସ ପୁଣି ଗୋଟିଏ ଦୂତ କରିଛି । କାଲି ପ୍ରଭାତରେ ଶତେ ହଜାର ପଦ୍ମ ଭେଟିବାକୁ ହେବ । ଏତେ ପଦ୍ମ ଏକା କାଳୀୟ ହ୍ରଦ ଛଡ଼ା ଅଉ କେଉଁଠି ମିଳିବ ନାହିଁ । ନାଗରାଜ୍ୟ କାଳୀଦହରୁ ପଦ୍ମ ତୋଳିବା ଯାହା, ମରିବା ମଧ୍ୟ ସେଇଆ । ତାହା ଦେଇ ନ ପାରିଲେ କଂସ ବଜ୍ର ଦଣ୍ଡରେ ସବଂଶ ନାଶିବ । ମରଣ ନିଶ୍ଚୟ ।

ଯଶୋଦା— ଅସୁର ଅଧମ କଂସର କଣ କରିଛୁଁ ଯେ, ସେ ଆମରି ସଙ୍ଗରେ ଏତେ ବୈର ସାଧୁଛି? ତୁମେ ତୁମର ଏହିଠି ଥାଅ ମୁଁ ଯାଉଛି ମୋ କହ୍ନାଇକି ନେଇ ଏ ସ୍ଥାନରୁ କୁଆଡ଼େ ଚାଲିଯିବି ।

ନନ୍ଦ— ସେ ବୁଦ୍ଧି କଣ ମୁଁ ପାଉନାହିଁ ଯଶୋଦେ ! କିନ୍ତୁ ହେଲେ କଣ ହେବ, କଂସ ଯେ ପୃଥିବୀର ରାଜା । ତା ଆଖି ଆଗରୁ ତ କୁଆଡ଼େ ଯାଇ ପାରିବ ନାହିଁ ।

ଯଶୋଦା— ତେବେ ଆଉ କି ଉପାୟ ହେବ ?

ନନ୍ଦ— ଆଉ ଉପାୟ କି[illegible] ନାହିଁ । ଏକା ମାତ୍ର ଉପାୟ ମୃତ୍ୟୁ । କିନ୍ତୁ ପାପୀ କଂସ [illegible] ମରିବା ଠାରୁ ଗୃହ ସବୁ ଗୋପ ଗୋପୀ [illegible] ପଶିବା । ତେଣିକି ବିଧାତାର ଇଚ୍ଛା ।

କୃଷ୍ଣ— ବନ୍ଧୁ ପ୍ରୟୋଜନ କାଳେ ବନ୍ଧୁର ସହାୟ
ଗୃହସ୍ଥର କର୍ତ୍ତବ୍ୟ ନିଶ୍ଚୟ;
ନ ହୁଅ କାତର ପିତ, ନକର ଭାବନା,
ସାମାନ୍ୟ ଏକଥାଲାଗି ।
ନିତି ନିତି ହର୍ଷମନେ କରୁଁ ଗୋଚାରଣ
ବୃନ୍ଦାବନେ ଯମୁନା ପୁଳିନେ;
ନିତି ନିତି ପଦ୍ମ ପୁଷ୍ପ ତୋଳି ଭାର ଭାର
ସଜାଉଁ ଗୋଷ୍ଠେ ଗଣ, ଖେଳୁଁ କେତେ ଖେଳ ।
କହ ଅନୁମତି ମୋତେ,
ଘନବନ୍ଧ ଶତଦଳ ତୋଳି ଅବହେଳେ
ଆଣିବ ନିଶ୍ଚୟ
ପିତଃ, ଚନ୍ଦ୍ରାକର ହୁର ।

ନନ୍ଦ— କାହ୍ନ, ଅନୁମତି ଦେବ ! ଏଁ, ଏଁ, ଅନୁମତି ଦେବି !
ପିତା ହୋଇ ଦୁଗ୍ଧ ପୋଷ୍ୟ ଶିଶୁକୁ ଜାଣୁ ଜାଣୁ କାଳର
କବଳ ଗ୍ରାସକୁ ପେଲି ଦେବ ! ନା, ନା, ତାହା ହେବ
ନାହିଁ । ନନ୍ଦର ପ୍ରାଣ ଥାଉଁ ଥାଉଁ, ଗୋପାଳ ଅଜ
ପଦ୍ମ କାଳୀଦହରେ ତୋଳିବାକୁ ଯାଇ ପାରିବ ନାହିଁ ।

ଯଶୋଦା— କହେଇଦେବି, କାଳୀହ୍ରଦକୁ ଯିବା କଣ ପିଲ-
ଖେଳ ଯେ ତୁ ହଗାଙ୍କୁ ପେନ ପଦ୍ମ ତୋଳି ଯିବୁ ?
ମୋ କଥା ମାନ ବାପ । ସେଠିକି ଯାଅନା । କଂସ
ହେଲେକେ ସମ୍ପ୍ରତିକୁ ମାରୁ ।

କୃଷ୍ଣ— (ଏକାନ୍ତେ) ପୁତ୍ର ସ୍ନେହ ମୋହେ ଅନ୍ଧ ଗୋପାଳ ଦମ୍ପତି
ନଣ୍ଡୁଛ, ରଖିଛ ବାନ୍ଧି ସ୍ନେହ ମାୟା ଡୋରେ
ମାୟାର ଅତୀତ ଦେହ, ପୁଣି ମାୟାମୟ,

ନନ୍ଦ—ଯଶୋଦେ, ଯଶୋଦେ, ଆସ, ଫେରିଆସ । ହାୟ୍ ବାୟଲୀ-
ବସୁନ୍ଧା ନାସ୍ତି !

(ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ ।



(ସୁଦାମ ପ୍ରବିଷ୍ଟ ହେଲା) ସ୍ଥାନ-ଗହନ ବନ

ସୁଦାମ—ଅ, ଅ, ବଉଳି, ଅ, ଅ, ବଉଳି, ବଉଳି ଅ, ଅ । ନା ଇଆଡ଼େ ତ କିଛି ମାଲୁମ ହେଉ ନାହିଁ । ମୋ ବଉଳୀ କୁଆଡ଼େ ଗଲା । ଏଁ-ଏଁ-ଏଁ- । ମୁଁ କଣ କରିବ । ଏଁ-ଏଁ-ଏଁ- । (କାନ୍ଦିବାକୁ ଲାଗିଲା)

(ସୁବଳ ପ୍ରବିଷ୍ଟ ହେଲେ)

ସୁବଳ—କି ଭାଇ ସୁଦାମ, ତୁ ଗୋଠ ଛାଡ଼ି ଏକୁଟିଆ କେତେବେଳେ କମିତି ଖସି ଚାଲି ଆସିଲୁ ମ ? ଆଉ ଏଠି ବା କାନ୍ଦୁଛୁ କାହିଁକି ?

ସୁଦାମ—ସୁବଳ, ମୋ ବଉଳୀ ଗାଈ ଏ ଅଡ଼କୁ ଡିଆଁ ମାରି ମାରି ଆସିଲା । ମୁଁ ତା ପଛେ ପଛେ ଗୋଡ଼େଇ ଗୋଡ଼େଇକା ଆସିଲି । କୁଆଡ଼କୁ ଚାଲି ଗଲା, କାହିଁ ତ ମିଳୁନାହିଁ । ମୁଁ କଣ କରିବ ! ଏଁ ଏଁ ।

ସୁବଳ—ସାଙ୍ଗ ସାଙ୍ଗେ ଆଉ ଆଉ ମିଳୁନାହିଁ ! କି ଆଶ୍ଚର୍ଯ୍ୟ ! ଇମିତି କଣ ଅଛି ଅଗୁହାରେ ହରିଗଲା ନା ?

ସୁଦାମ—ଭାଇ, ଆମେ ଦୁହେଁ ଚାଲନ ଢଲ କର ଅଟର ଖୋଜିବା ପୁଣି ।

ସୁବଳ—ତୁହେଁ କାହ୍ନୁଁକୁ, ସବୁ ସଖାମାନେ ମିଳିତ ଏ ବଣଟାକୁ
ହନ୍ତାଳ ପକେଇବା । ହେଇ ରାମ, କହ୍ନାଇ, ଆଉ ସବୁ
ସଖାମାନେ ଆସିଗଲେଣି ।

( କୃଷ୍ଣ, ରାମ, ଦାମ, ଅର୍ଜ୍ଜୁନ ପ୍ରବେଶ ହେଲେ )

କୃଷ୍ଣ— ତୁମ ଦୁହିଁଙ୍କୁ ଆମେ ସେ ଆଡ଼େ ଖୋଜି ବୋହଛୁଁ,
ଆଉ ତୁମେ ଆସି ଏଠି କ'ଣ କରୁଛ ?

ସୁବଳ—ଶୁଣିଛୁନା କହ୍ନେଇ, ସୁଦାମର ବଉଳୀ ଗାଈ ହଜିଛି ।
ସେ ତାକୁ ନ ପାଇ ଏଠେ କାନ୍ଦୁଥିଲା । ମୁଁ ଆସି
ଦେଖିଲି ।

ଦାମ— ଆଜି ଏଆଡ଼େ ବଣଟାକୁ ଆସିଲେ କାହିଁକି ଏତେ ଗାଈ
ବାଛୁରି ହଜନ୍ତି ? ମୁଁ ସେଇଥିଲାଗି ଏ ଆଡ଼େ ଗୋଠ
କରିବାକୁ ଭଲ ପାଏ ନାହିଁ ।

ଅର୍ଜ୍ଜୁନ—ସେ ଖାଲି ଦୋଷ ଦେବା କଥା । ମୋର ତ କାହିଁ
କେବେ ଗାଈ ବାଛୁରି ଏ ବଣରେ ହଜି ନାହାନ୍ତି ।
ଯେ ଯିମିତି ଗୁହାଳୁଆ ଥିବ, ତା ଗାଈ କାହିଁକି ହଜିବ !

ସୁଦାମ—ମୋଠାରୁଁ ବେଶି ଗୁହାଁଳୁଆ ହେବ କିଏ ? ସେ କୁରୁଡ଼
ସିମିତି ଥାଇଲା, ମୁଁ ତ ପଛେ ପଛେ ଅସୁଁ ଅସୁଁ କେଉଁଠି
ଛଡେଇ ଗଲା ପର ଗଲା ।

ସୁବଳ—ମୁଁ ହେଇଥିପାଇଁ କହୁଛି କି ଚାଲ ଦଉଁ ବଣଯାକ
ପତା ପତା କରି ହନ୍ତାଳ ପକେଇବା । ଯଉଁଠି ଥିବ, ବାହେ
ବାହାରିବ ।

କୃଷ୍ଣ— ବୁଆଡାଳେ କାହିଁକି ଏତେ କଷ୍ଟ କରିବା ମ ? ମୁଁ ଜାଣୁଛି
ଏ ସେହି ଚନ୍ଦର ନା'ଗଙ୍କ କାମ । ଏ ବଣରେ ନାଗଙ୍କ
ପ୍ରତାପ ବଡ଼ ବେଶି । ଯେତେ ଗାଈ ବାଛୁରି ହଜୁଛନ୍ତି,
ସବୁ ସେହି ଚୋର କରି ନେଉଛନ୍ତି ।

ସୁବଳ— ତେବେ ଆମେ ଆଜ ଆଉ ବୁଡ଼ିଆଣ ଛତ୍ର ଏ ବଣକୁ ଆଉ ନ ଆସିଲେତ ହୁଅନ୍ତା !

ବଳରାମ—କାହିଁକି, ସେ ଆମ ସଙ୍ଗରେ ଏହାପରି ସବୁଦିନେ ଲାଗିଥିବେ, ଆଉ ଆମେ ତାଙ୍କୁ ଡ଼ରି ଲୁଚି ରହିଥିବା ! ଛିଃ ଅପାରଗ ହେଲେ ନା ଆମେ ?

ସୁବଳ — ମୋତେ ଭାରି ଡ଼ର ମାଡ଼େ । ସତ୍ୟ କହୁ, ତାଙ୍କର ଯେଉଁ ସେ କାଳୀୟ ନାଗଟା, ବାପ ରେ, ତାର ପାଞ୍ଚଟା ମୁଣ୍ଡ ! ସେହି ଦୁଷ୍ଟ ପଶୁ ନ ଗଲେ ରକ୍ଷା ?

କୃଷ୍ଣ— ହଁ ଆମେ ତାଙ୍କ ଦାଉ ଅନେକ ସହିଲୁଣି । ଥରେ ତାଙ୍କୁ ଜବଦ କରିବା । ଏକାଦିନେ ତାଙ୍କ ଦର୍ପଦାନ୍ତ ଭାଙ୍ଗି-ଦେଲେ ଆଉ ସେ କେବେ ଉତ୍ପାତ କରିବେ ନାହିଁ ।

ସୁବଳ — ତାଙ୍କୁ ପାଇବା କେଉଁଠି ? ସେତ ପାଣିରେ ପଶିଥିବେ ।

କୃଷ୍ଣ— ସମସ୍ତେ ଚାଲ କାଳୀଦହରେ ପଶି ପଦ୍ମ ଫୁଲ ତୋଳିବା । ତହିଁରେ ନାଗ ସବୁ ରାଗ ହୋଇ ବଡ଼େଜି ବାହାରିବେ ।

ସୁବଳ— ସେ କଥା ହେବ ନାହିଁ । ତତେ ତ ମୁଁ ସେଠିକି ଛାଡ଼ି ଦେବି ନାହିଁ । ସେ ପାଣି ଛୁଇଁଲେ କ'ଣ ମଣିଷ ବଞ୍ଚିବ !

କୃଷ୍ଣ— ଯାହା ହେଉ, କରିବାକୁ ହେବ । ଆମର ଆଜି ଶହେ ଭାର ପଦ୍ମ ଫୁଲ ଦରକାର ! ସେଠିକି ନ ଗଲେ ଫୁଲ କେଉଁଠୁ ଆସିବ ?

ସୁବଳ — ଏତେ ଫୁଲ କ'ଣ ହେବ କି ଭାଇ ?

କୃଷ୍ଣ — କଂସ ରାଜାଙ୍କ ଡ଼କରା ଆସିଛି, ତାଙ୍କର ଯାତ୍ରା ହବ । ସେଏ ହବ ପଦ୍ମଫୁଲ ବାପା ଭେଟିବେ ।

ସୁବଳ — ନ ଦେଲେ କ'ଣ ହେବ ?

କୃଷ୍ଣ — ନ ଦେଲେ ସବଂଶରେ ମାରିବ ।

ବଳରାମ—ତେବେ ଆଉ ଉତ୍ତର କରୁଛ କାହିଁକି ? ଯାଅ ସମସ୍ତେ କାଳୀଦହରେ ପଶି ପଦ୍ମ ବନ ଭାଙ୍ଗିବ; ତେଣିକି ଯାହା ହେଉ । ଯେ ଡ଼ରିବ ସେ ପଛକେ ନ ଯାଉ ।

ସୁବଳ— କହେଇ ମହିଁ ଠି ସାଙ୍ଗରେ ଅଛୁ, ସେଠି ଡ଼ର କଣ ?

ସକଳେ—ନା, ଅମେ କେହି ଡ଼ରୁନା ନାହିଁ ।

ଗୀତ (ସୁରଟ ମିଶ୍ର କବାଲି)

ତୋଳିବା କମଳ ଆଜ ପଶି ପଶି ।

ସରସେ, ହରଷେ ଫୁଲ ଦଳ ପରଶେ,
ତେଜ ସଙ୍ଗେ ଖେଳି ଯିବା ନୀଳ ଜଳେ ଭାସି ଭାସି ।

କାଳୀ ସରୋବରରେ ଖେଳେ କେତେ ଶତ୍ରୁ ଲହରୀ,
ସଖା ସଙ୍ଗେ ସୁଖ ମନେ ପହଁରି ପହଁରି,
ରଙ୍ଗେ ଭଙ୍ଗେ, ଫୁଲ ତୋଳି ଅଣିବା,
ଦର୍ପଧର ନାଗ ଗଣେ ଗୋଟି ଗୋଟି ନାଶି ନାଶି ।

( ପ୍ରସ୍ଥାନ )

(ପଟକ୍ଷେପ)



# ତୃତୀୟ ଅଙ୍କ ।



## ପ୍ରଥମ ଦୃଶ୍ୟ ।



(ନାଗ ସେନାମାନେ ନାଚି ୨ ପ୍ରବେଶ କଲେ)

ଗୀତ (ନାଗେଶ୍ୱରୀ କାନଡ଼ା)

ନାଗରେ ନାଗରେ ଫେଲ ଫେଲ ଅ ।
ଚଳ ଚଳ ଅ—ଚଳି ଚଳି ଅ ।
ଛକ ଛକ ବାଙ୍କି ବାଙ୍କି ଖଳ ଖଳ ଅ,
ଦଲ ଦଲ ଝୁଲ ଝୁଲ ଦଣ୍ଡ ଗାଳ ଅ ।
ଗୁଲ ଗୁଲ ବାଡ଼ ଖାଡ଼ ଜାଳ ଜାଳ ଅ,
ଜଳ ଜଳ ଅ, ଚଳ ଚଳ ଅ, ଫେଣା ତୋଳ ଅ,
ଅ——ଅ——ଅ——ଅ ।

୧ମ ନାଗ—ହୁସିଆର, ଭୁଇ ଜଗି ଯବ ନ, ଖବରଦାର !

୨ୟ ନାଗ—ମୋ ପାଖ ମୁଁ ଠିକ ଚମ୍ପୁ'ଛି । ମାଛି ପଡ଼ିଲେ ନବ ଖଣ୍ଡ । (ତରବାରି ଆସ୍ଫାଳନ)

୩ୟ ନାଗ—ମୋ ବାଟରେ ଯିଏ ଯିବ, ଏକା ଚୋଟେ ପକେଇବି ସେ ଛଟ କରି ପଡ଼ିବ । ଏ ବାବା ଗଛୁଆ ନାଗର ବଂଶ ! ହୁଁ ।

୧ମ ନାଗ - ଓଃ, ଅଢ଼େଇ କଥାରୁ ତମ ଠାରୁ କ'ଣ ହେଣି ? ପଦ ମାନିବ, ନା ଶକ୍ତି ମାନିବ । ଏ ଅଣ୍ଡାଡ, ଅଫୁଙ୍କ ।

୨ୟ ନାଗ—ଶୁକ୍ରବାର ଦିନ ଯଦି ହାବୁଡ଼େ ପଡ଼ ଯିବତ, ତମେ ପାପ ଛାଡ଼ା କଛି କ ଯାନେ । ନା, ଶାମୁକ ମୋଡ଼ା, ନା, ବ୍ରହ୍ମ ଗୁପୁଜାଣି ହେବେ ବଗତ ପଡ଼ିଲେ ଧାଲୁଅଏ ଧରିବ ତ ଦେଖିବ ମାଉଁସ ହଟେଇବ ।

୧ମ ନାଗ—ନାଗେନ୍ଦ୍ର,

ଗୋପବାସୀ ଶିଶୁଗଣ ଗୋଧନ ପାଳକ,
ନିତ୍ୟ ନିତ୍ୟ ପଶୁଛନ୍ତି ଆମ ଗହ୍ୱରେ,
ଦେଖ ଏ ନାଗ ହ୍ରଦେଶ୍ୱରେ;
ନ ମାନି ତାହାର ବାଧା ମହା ଦମ୍ଭଭରେ ।

୨ୟ ନାଗ—ମହାପଦ୍ମ,

କଳା ହୋଇ ତାଙ୍କ ମେଳେ ଗୋଟିଏ ବାଳକ,
ଅଦମ୍ୟ ତେଜସ୍ୱୀ ନିତ୍ୟ, ଦୁର୍ଦ୍ଦାନ୍ତ ଅତି ।
ଏକାକୀ ସେ ସ୍ୱଚ୍ଛ ନୀର କରୁଛି ଅଚଳ,
ମନ୍ଥିଣ କମଳ ବନ ମତ୍ତ ହସ୍ତୀ ସମ ।

କାଳୀୟ— ଛି ଛି କୃଷ୍ଣ, ଛି ଛି କୃଷ୍ଣ—

ବୀର ବଂଶେ ଜନ୍ମ ହୋଇ କେମନ୍ତେ କହନ୍ତୁ
ଜାତିର କଳଙ୍କ କଥା, ଲଜ୍ଜା ପାଉ ନାହଁ !
ଶୃଗାଳ କରଇ ନୃତ୍ୟ ସିଂହ ଅନ୍ତଃପୁରେ,
ସିଂହ ଶିଶୁ ହୋଇ ତୁମ୍ଭେ ଦେଖୁଛ ନୟନେ !
ହେଲଣି କି ନାଗ ଜାତି ଏତେ ବୀର୍ଯ୍ୟହୀନ !
କାହିଁ ଗଲ ଦିନ,
ଜୀବ ସନ ସନ୍ତ୍ରସ୍ତ ଥିବ ଅତ୍ୟାଚାର !
ଭାଙ୍ଗିଲି, ଜାଣିଲି, ଏବେ ବଞ୍ଚୁ ନାହିଁ ଦର୍ପ
ଉତ୍ତପ୍ତ ନାଗେନ୍ଦ୍ର ରକ୍ତ ତୁମ୍ଭ ଧମନୀରେ;
ଅବା ବର୍ଦ୍ଧିତ ରକ୍ତ ତୁମ୍ଭେ ହଜିଛ ତ,
ଭୁଲିଲଣି ବୀର ଭାବ, ଆତ୍ମ ଅଭିମାନ ।
ଉଠ ଉଠ, ଜାଗ ଜାଗ, ନାଗ ପୁତ୍ରଗଣ !
ଘୁଞ୍ଚାଇ ଜଡତା ଦୈନ୍ୟ, ନବ ଜାଗରଣେ,

ରକ୍ଷା କର ନିଜ ବାସସ୍ଥଳ ପବିତ୍ରତା ।
ଆତତାୟୀ ଶତ୍ରୁ କରେ ବଧ ଆଜି ସମ୍ପ୍ରତି,
ପ୍ରାଣ ଠାରୁ ପ୍ରିୟ ବସ୍ତୁ, ଜାତୀୟ ମର୍ଯ୍ୟାଦା ।
ଅବଲମ୍ବି ଶତ୍ରୁ କୁଳ ବିନାଶି ନିର୍ମୂଳେ,
ଅରାତି ହୃଦୟ ରକ୍ତେ ମେଣ୍ଟାଅ ପିପାସା,
କର ପ୍ରାଣ ପଣ,
ମନ୍ତ୍ରର ସାଧନ, ଅବା ଶରୀର ପାତନ ।

( ପ୍ରସ୍ଥାନ )

୧ମ ନାଗ—ଆଜ ଆଉ ଛାଡ଼ିବା ନାହିଁ । ଯେ ଆସି କାଳୀୟ ହ୍ରଦ ପାଣିରେ ଗୋଡ଼ ଦେବ, ତା ଜୀବନ ମୋ ହାତରେ ।

୨ୟ ନାଗ—ବେଙ୍ଗକୁ ଯେପରି ଗିଳନ୍ତି, ସେହି ଗଉଡ଼ ଟୋକାଙ୍କୁ ଆଜ ଗୋଟି ଗୋଟି କରି ଗିଳି, ବିନାଶ କରିବା ।

୩ୟ ନାଗ—ଗାଈ ଗୋରୁ ଯେତେ ତାଙ୍କୁ ଧରି ମୁଁ ଏକା ସାବାଡ଼ି କରି ଦେବି ।

୪ର୍ଥ ନାଗ—କଅଁଳା ବାଛୁରି ଗୁଡ଼ିକ ଏକା ମୋ ଭାଗରେ, ଜାଣିଥା ।

୫ମ ନାଗ—ସାବଧାନ ଆଜ ଆଉ କାହାରି ରକ୍ଷା ନାହିଁ । ଆସ ସବୁ ନାଗମାନେ ହ୍ରଦ କୂଳେ କୂଳେ ହାତ ହତଅର ହୋଇ ରହିବା ।

(ନାଗକନ୍ୟାଙ୍କର ସାମରିକ ନୃତ୍ୟ ଗୀତ)

ସଜରେ, ସାଜରେ, ଜୀବନ ଆହବେ ସାଜରେ,
ବାଜରେ ଭେରୀ ବାଜରେ । ]
ବାଜରେ ଭେରୀ, ବାଜରେ ଭେରୀ, ବାଜରେ ଭେରୀ ବାଜରେ ।
ହୁଙ୍କାରି ଉଠ ବୀର ନନ୍ଦନ, ଜାତୀୟ ଯଜ୍ଞ ଅଙ୍ଗନର ।

ଜ ଘର ଡ଼ାକେ ହୋଇ ପ୍ରବୁଦ୍ଧ, ଉଠ ରେ ସବ ଗୋଳକ ବୃନ୍ଦ,
କଷ୍ଣ ପତାକା ଦେଇ ଗର୍ବେ, ସମର ହେବେ ସଜରେ ।
ଧନ୍ତ ଧର ଅସି ଧର କୃପାଣ, ଧର କାର୍ମୁକ, ଶାଣିତ ବାଣ,
ଏ କ୍ଷୟ ଦେବେ ଦୈନ୍ୟ ଦେବ, ଦେବ ମେଦେଦେ ମାଦେବ ।
(ପ୍ରସ୍ଥାନ)



୨ୟ ଦୃଶ୍ୟ ।



( ସୁକେଶୀ ନୃତ୍ୟ ଗୀତ କରୁଁ କରୁଁ ପ୍ରବେଶ ହେଲା )

କାନଡ଼ା ମିଶ୍ର-କାଓ୍ୱାଲି ।

ବନେ ବନେ ଫୁଲ ତୋଳିବ ।
ଯତନେ ବନଫୁଲେ ବନ ମାଳା ବାନ୍ଧିବ । ଘୋଷା
ପାଖୁଡ଼େ ପାଖୁଡ଼େ କେତେ ମଧୁ ଦେବ ଭରି ଗୋ,
ଲୁଚାଇ ରଖିବ ତହିଁ କନ୍ଦର୍ପ ଚାତୁରୀ ଗୋ,
ଅତୁଲ ମୋ ବନ ଫୁଲ, କେ ବୁଝିବ ତା'ର ମୂଲ,
କେ ଅଛ ରସିକ କାହା ଗଳେ ମାଳା ପିନ୍ଧାଇବ ।
ନେତ୍ର ନେତ୍ର ଫୁଲ ଗୁନ୍ଥି ବନାଇବ ହାର ଗୋ,
ଶିରେ ଘେନି ଭ୍ରମିବ ମୁଁ ଫୁଲର ପସରା ଗୋ,
ଶରଧା ଚନ୍ଦନ ବୋଳି, ପ୍ରେମର ସିନ୍ଦୂର ଢାଳି,
ତାହାର ଗ୍ରାହକ ହେଲେ ବିନା ମୂଲେ ଯାଚି ଦେବ ।

(ମାଳା ଛକ ଛକ ପ୍ରବେଶ ହେଲେ)

ମାଳା— କଲ୍ୟେ, ନୂଆ ବଣିକଣି ! ହେଇ ଦେବ ମୁଁ ଅଛିଛୁ ।
ମୋହର ଗଳାରେ ବରଣ ମାଳା ପିନ୍ଧାଇ ଦେ ।

ସୁକେଶୀ—ଛି, ତୁମେ ସଖି କେଉଁଠି କିଛି ଶୁଣୁଥିଲ ?

ଲୀଳା। କାହିଁକି, ମୋ ପରି ରହିକି କ'ଣ ତୋ ମନ ଦେଇ ପାରିବ ନାହିଁ ନା ?

ସୁକେଶୀ—ହିଁ, ତୁମ ମନ କଥା କଏ ଘେନୁଛି ତାହାର ଠିକ୍ ନାହିଁ । ତମେ ପୁଣି ପର ମନ ଘେନିବାକୁ ଆସିଛ !

ଲୀଳା— ସଖି, ମୁଁ ଆଜ ପୁଣି ତାଙ୍କୁ ଦେଖିଲି ?

ସୁକେଶୀ—କିଏ ଗୋ କିଏ ? କାହାକୁ ଦେଖିଲ ?

ଲୀଳା— ସେହିପରି, ଯାହା କଥା ସବୁବେଳେ କହୁଛି ।

ସୁକେଶୀ— ସେହି ନା, ଯାହା କଥା ଶୁଣିବାକୁ ମୁଁ ସବୁବେଳେ ନାହିଁ କରୁଛି ?

ଲୀଳା — ମୁଁ କ'ଣ ଅପେ ଆପଣାକୁ ନାହିଁ କରୁଛି ! କିନ୍ତୁ, ନାହିଁ କଲେ କ'ଣ ହେବ । ମୋ ଆଖିର ପ୍ରତି ପର-ଧାରେ ତା ଛବି ଲଖି ଉଠୁଛି । ମୋ ହୃଦୟରେ ପ୍ରତି ରକ୍ତ ବିନ୍ଦୁରେ ତା ଛବି ମିଶି ଗଲାଣି ।

ସୁକେଶୀ ଛି, ବ୍ରଜ କୁମାର, ସିଏ ତ ସାମାନ୍ୟ ଗାଈ ରଖୁଥିଲା; ଗୋପାଳଟାଏ । ସେ ଛଡ଼ା ଆମେ ହେଉଁ ନାଗ କନ୍ୟା, ସେ ମନୁଷ୍ୟ; ଏ ଅସମ୍ଭବ ପ୍ରୀତିରେ ମନ ବଳାଉଛ କାହିଁକି ସଖି ? ତାହାଙ୍କ ସେ କାଳିଆ ଦେହଟାରେ ସେପରି କ'ଣ ଯେ ଗୁଣ ଅଛି ମୁଁ ତ ଜାଣି ପାରୁନାହିଁ ।

ଲୀଳା — କଳା ଅଙ୍ଗାର, କଳା ପାଥର, କଳା କୋଇଲି, କଳା ଜିନିଷ ଯେତେ ସବୁ କିଛି ଗୁଣ ନଥାଏ ବୋଲି ତ ତାହାର ନ ଥିବ.

ଗୀତ । ( ମିଶ୍ର ବେହାଗ । )

କାଳିଆ ରୂପ ତାର ହରଇ ମନ ସେ ;
ଯେଣିକି ଚାହିଁବି ସଖି ତା ଛବି ଦିଶେ ଦେଖଣା ॥ ଘୋଷା ॥

ଗୋପ ବାହୁଡ଼ା ବେଳରେ,
(ସେ ଯେ) ଗୋଧୂଳି ଲଗ୍ନ ସମୟରେ,
ଅଙ୍ଗରେ ଧୂଳି ଖେଳରେ, ମୁରୁକି ମୁରୁକି ହସେ ॥
ମୋହନ ବେଣୁ ନାଦରେ,
(ସେ ଯେ) ଡ଼ାକଇ କେଡ଼େ ଆଦରେ,
ଘଣ୍ଟାଲିଙ୍ଗ ପରମାଦରେ, ଧଇରଜ ନାଶଇ ସେ ॥

ସୁକେଶୀ ସଖି, ତା କଥା ଯଦି ଜାଣି ଥାଆନ୍ତ ତେବେ ଏମନ୍ତ ହୁଅନ୍ତ ନି ! ପିଲାଟିଏ ବୋଲି କହୁଅଛ ଯିନା, କିନ୍ତୁ ସେ ବଡ଼ ଶଠମ ପିଲା, ବଡ଼ ଗହନ କୁହୁକ ଜାଣେ । ମନ୍ତ୍ର କୁହୁକ କଣ୍ଟ ପରଳା, ଅବଳାଙ୍କ ମନ ଭୁଲାଇ ମଜା ଦେଖେ । ଏହି ତାର ସ୍ୱଭାବ । ଏହି ତାର ବ୍ରତ ।

ଗୀତ ।

ତାକୁ ଚିହ୍ନିଛୁକି ସଖି, ସେତ କୁଳବତୀଙ୍କ କୁଳକିଆ ।
ନନ୍ଦ ନନ୍ଦନ କାଳିଆ ॥ ଘୋଷା ॥
ଗୋପ ଯୁବତୀ କେତେ          ପଡ଼ି ତା ପ୍ରେମ ପଥେ,
କାନ୍ଦି କାନ୍ଦି ଦିନ          ନ ସରନ୍ତି ନିରତେ,
ତା ପ୍ରୀତିକି ପଡ଼ନ୍ତେ          ନାହିଁ ସକଳ ପତେ,
ରମଣୀ-ଗଣ। କୁଳ ଢଥ ॥
ଜାଣେ କେତେ ଛନ୍ଦର          ଫୁଟିଆ ବେଣୁ ଧର,
ଧରଥାଇ ଅଧରେ          ମୁରୁଳୀ ମନୋହର,
ତା ପ୍ରୀତିକି ଜୁହାର          ଦେଉଛନ୍ତି ବାର ବାର
ଗୃହିଣୀ ତରୁଣ ଦାଉନ୍ଥା ॥

ବୁଝିଲ ସଖି, ଏହିପରି ବାଙ୍କ ଗୁହିଁଣି ଗୁହିଁ, ବଇଁଶୀ ବଜାଇ, ନବ ଯୁବତୀ ମାନଙ୍କୁ ବଶ କରେ । ବେଳ ଥାଉଁ ଥାଉଁ କହୁଛି ସଖି, ସାବଧାନ ।

ଗଳା— ସେଜ ଥାଉଁ ଥାଉଁ ଏକା ଏକା କହୁଛୁ, ସୁକେଶି !
ସଖି, ଆଜ କ'ଣ ହେଉଅଛି ? ତୁ ନାଗ ହୋଇ ନାଗର ମନ
ବୁଝି ପାରୁ ନାହୁଁ ? ଯାହା ହେବାର ତାହା ହୋଇ
ସାରିଲଣି । ଆଉ ସମୟ ନାହିଁ, ଆଉ ଉପାୟ ନାହିଁ ।
ସେ କୁହୁକା ମେଳେ ଦେହ ବ୍ୟାଧ ମେଳେ ମେଳ,
ମୋ ମନ ମୃଗ ତାହାର ଫାନ୍ଦରେ ଧରା ପଡ଼ିଲଣି ।

ସୁକେଶୀ— ତୁମ ଏତ ଦେଖି, ଯାହା ଭାବୁଥିଲି, ଦେଖୁଛି, ତାହ ତ
ସେତେବେ ସତ ! ଦୁରନ୍ତ ପୀରତ ନାଗୀ ଅଧି ତୁମ ଚିତ୍ତକୁ
ଅକାଳରେ ଗ୍ରାସିଲଣି ! ସେ କାଳିଅ ଭୁଜଙ୍ଗ କେବେ
ଦଂଶିଲା ସଖି ? ସେହି କୋମଳ କମଳ-କୋରକରେ
କଳାପୋକ କିପରି ପଶିଲା ସଖି ?

ଗୀତ ।

ଗଳା— ସଖିରେ ବ୍ୟାକୁଳତ ମୋର ଚିତ୍ତ । ସେ କର ବହୁତ ॥

ସୁକେଶୀ— ଛାଡ଼ ଛାଡ଼ ଏ ଭାବୁରୀ ମୋ ଶୁଣିଟି ସଜନୀ,
କାହିଁ ପାଇଁ ଭ୍ରମ ଭ୍ରମ କରା ଦିବା ରଜନୀ,
ଦାରୁ ଦନ ତନୁ କ୍ଷୀଣ କାହିଁରେ ସଖି ହେଉଛି,

ଗଳା— ସଖିରେ ବ୍ୟାକୁଳତ ମୋର ଚିତ୍ତ ।

ସୁକେଶୀ— ଜାଣୁଛରେ ସଙ୍ଗିନି ପୀରତ କି ସତ,

ଗଳା— ସଦାନନ୍ଦେ ଜାଗେ ସେ ମୋହନ ମୂରତ,
ସରଳା ଅବଳା କେ ପାରିବ ତରତ ?
ସଖିରେ ବ୍ୟାକୁଳତ ମୋର ଚିତ୍ତ । ସେ କର ବହୁତ ॥

ସୁକେଶୀ— ନୂଆ ପ୍ରୀତ ସେ କରନ୍ତି ସେ କପଟ କେବଳ ଜାଣିଛ ନା?
ପୀରତ ପଥରେ ସେ ପୁରୁଷ ହେଲେଣି, ତାଙ୍କ ଉପ-
ଦେଶ ନେଇ ବାଟ ଚାଲ । ନୋହିଲେ ପଛରେ ପସ୍ତାଇବ-
ବାକୁ ପଡ଼ିବ !

ମାଳା— ମଣିଷତ ଜୀବନରେ ଅତର ପ୍ରୀତିକରେ । ତୋ'ପରି ଯେ ପ୍ରୀତିର ବଣିଜ କରୁଥିବ ସେ କେଜାଣି ଅରକୁ ଅଧେ ଠକ ଶିଖି ପୁରୁଖା ହେଉଥିବ ।

ସୁକେଶୀ- ମୋ ଉପରେ ରାଗୁଛ କାହିଁକି? ତମେ ରଜା ଝିଅ । ତମକୁ କିଏ ଅଟକାଇବ ? ତମ ଇଚ୍ଛାରେ କିଏ ବାଧାଦବ? ତେବେ ମୁଁ କହୁଥିଲି କି ଏଠୁଁ ଯିବା ଚାଲ ।

ମାଳା— ସଖି, ସୁକେଶି, ତୁ କଣ ଜାଣୁନାହୁଁ, ସେରୂପ ଦେଖିଲା ଧନକୁ ପୁଣିଦେଖିବା ଆଶାରେ ମୁଁ ସବୁବେଳେ ଏହିବନରେ ବୁଲୁଛି । ଏତେ ଦିନେ ତାକୁ ପାଇଛି ।

ସୁକେଶୀ-କେଉଁଠି ଦେଖିଲ ସଖି ?

ମାଳା— ଏହିଠି ଲୋ ଏହିଠି । କାଳୀଦହ କୂଳରେ ।

ଗୀତ ।

ସୁକେଶୀ—

ଖସାପ ତୁ ହେଲୁରେ ।
ଖେଳା ଲୋଳା ଖଞ୍ଜନାକ୍ଷି କି ସାହସ କଲୁରେ ॥ ପଦ ॥
ଖଗ ହୋଇ ସୁର ତରୁ କୁସୁମ ବାଞ୍ଛିଲୁରେ ।
ଖେଦ ବୀଜ ନିଜ ହୃଦ-କେଦାରେ ବୁଣିଲୁରେ ॥ ୧ ॥
ଖିଅଲ ପରିକ ଧନ ମନରେ ଭାଳିଲୁରେ
ଖଳକାରି ନୋହି କଳା ନାଗକୁ ଗୁଡ଼ିଲୁରେ ॥ ୨ ॥
ଖାଇ ଦେଇ କି ଅମଳ ଅଚେତା ହୋଇଲୁରେ ।
ଖାସ୍ ଖଣ୍ଡା ଧାରି ଖଟ ବଗିର ଶୋଇଲୁରେ ॥ ୩ ॥
ଖଗି ଝୁରି ଝାଉଁଳିବା ଶ୍ରୀଅଙ୍ଗ ପାଇଲୁରେ ।
ଖ-ମଣି ମଣ୍ଡଳକୁ ତୁ କର ବଢ଼ାଇଲୁରେ ॥ ୪ ॥



( କାଳୀୟ ପ୍ରବେଶ ହେଲେ )

କାଳୀୟ- ମାଳା, ସୁକେଶୀ, ଏଠି ଏକୁଟିଆ କଣ କରୁଛ ମା ?

( ମାଳା ବାଳକା ସୁଲଭ ଆଦରରେ ଧାଇଁଗଲେ ଓ ସୁକେଶୀ ଲୁଚିଯାଇ ଅଧୋବଦନରେ ରହିଲେ )

ମାଳା—(କୁଣ୍ଢାଇ)ବାପା ବାପା, ଆମେ ଦୁହେଁ ଗାଡ଼ କାନନରେ ଫୁଲ ତୋଳୁଥିଲୁଁ ।

କାଳୀୟ- ଏ ସ୍ଥାନ ସବୁ ଆଜକାଲି ବଡ଼ ବିପଦ ଜନକ ହୋଇଛି । ଏକୁଟିଆ ଅସମୟରେ ଆସିବା ଉଚିତ ନୁହେଁ ମା ।

ମାଳା— ଯେ ପରକୁ ହିଂସା କରେ ତାର ସିନା ପଦେ ପଦେ ବିପଦ, ଯାହାର କେହି ଶତ୍ରୁ ନାହିଁ, ତାର ପୁଣି ବିପଦ କ'ଣ ବାପା ?

କାଳୀୟ- ବାଳିକା, ସଂସାର କଥା ତୁ କ'ଣ ଜାଣୁ ? ଦୁଷ୍ଟ ଜନ ତ ସେ ବିଚାର କରେ ନାହିଁ ମା ?

( ଜଣେ ନାଗ ଦୂତର ପ୍ରବେଶ )

ନାଗ— ମହାରାଜ—

ଗୋପବାଳେ ନନ୍ଦ ଛନ୍ଦ ମହା ଉଦ୍ୟମରେ
କାଳୀଦହେ କମଳ କାନନ;
କର ଅସ୍ଫାଳନ,
ମଦ ମତ୍ତ କରି ଯୂଥ ସମ,
ଛାର ଖାର କରୁଛନ୍ତି ନାଗଗଣ ଭବନ ।

କାଳୀୟ-ଅସିଛିକି ସେହି ଶିଶୁ
କଳାରୂପ ଯାର,
ଘନ ଘନ କୁଞ୍ଚିତ ଚିକୁର ?

ନାଗ— ଆସିଛି ସେ ଶିଶୁ ସ୍ୱଚ୍ଛ, ସେହି ଯୂଥପତି,
ପିନ୍ଧି ପୀତ ବାସ,
ବାନ୍ଧି ଶିରେ ଗୁଞ୍ଜାମାଳ, ଶିଖିପୁଚ୍ଛ ଚୂଳ
ଇନ୍ଦ୍ର ନୀଳ ଦ୍ୟୁତି ସମ ଝଟକେ ତା କାନ୍ତି !
କରେ ବେଣୁ ଧରି,
ଅସଂଖ୍ୟ ବାଳକ ମେଳେ ସନ୍ତରି ସନ୍ତରି,
ଡଲ୍ଫା ସମ ନୀଳ ଜଳେ ଖେଳୁଅଛି ରଙ୍ଗେ ।

କାଳୀୟ-ନାଗଙ୍କ ସଙ୍ଗୀସ୍ୱବୃନ୍ଦ କାହିଁ ଗଲେ ଦୂର ?
ନିଶ୍ଚିନ୍ତେ ହୋଇଣ ଛଡା
ଦେଖନ୍ତି କି ନିଜ ଗୃହେ ଅବତର ନାଟ ?

ନାଗ— ଶଙ୍କିତ ପ୍ରହରୀକୁଳ ବାଳକ ପ୍ରତାପେ,
ପ୍ରାଣ ଭୟେ ଛାଡ଼ି ନିଜ ସ୍ଥାନ
ଇତସ୍ତତ କଲେ ପଳାୟନ ।

କାଳୀୟ-ଫଣୀନ୍ଦ୍ର ଆଗାରେ ପଶି ନିର୍ଭୟେ ମୂଷିକ
ସ୍ୱଦର୍ପେ କରିବ ନୃତ୍ୟ,
ଫଣୀନ୍ଦ୍ର ତା ସହିବ କାତରେ !
କାଳୀୟ ମସ୍ତକ ମଣି
ହୋଇ ନାହିଁ ଏତେ ପ୍ରଭାହୀନ;
କାଳୀୟର ନୀଳ ରକ୍ତ
ଛାଡ଼ି ନାହିଁ ତାର ସ୍ୱାଭାବିକ ତାପ ।
ଅଜ୍ଞ ! ତେବେ ନାଗ କୁଳେ ଏକ ଅଭିଶାପ !
ନାଗ ନାମ ଧାରୀ, ଭୀରୁ, ଦାସ ଅଛ କାହିଁ,
ଦେଖିବେ ଅନ୍ତକ ଗୃହଁ

ଏକେଶ୍ୱର ରଣକ୍ଷେତ୍ରେ କହିବ ପ୍ରସ୍ତୁତ ।
ହେଲ ଧର୍ମ ତାକୁ,
ନର ହତ୍ୟା, ଶିଶୁ ହତ୍ୟା ଦେଖୁ ଭଣ୍ଡ ଯାଙ୍କ ॥
(ପ୍ରସ୍ଥାନୋଦ୍ୟତ)

ଲଳା — (ଅଗ୍ରସରି) ପିତା, ପିତା,
ନାଗେନ୍ଦ୍ରର ଶୋଭେକି ଏ ପଣ ?
ନର ହତ୍ୟା ! ଶିଶୁ ହତ୍ୟା ! !
ନିରସ୍ତ୍ର, ନିର୍ବୋଧ,
କ୍ରୀଡ଼ା ଲୋଭେ ପଦ୍ମ ତୋଳି ସନ୍ତରଣ ରତ
କେମନ୍ତେ ବଧିବ ଶିଶୁ ?
ଏଡ଼ ଘୋର ଧର୍ମ ?

କାଳୀୟ-ସାମାନ୍ୟା ବାଳିକା ହୋଇ କରୁଛୁ ସାହସ,
ନୀତି ଶିକ୍ଷା, ଧର୍ମ ଶିକ୍ଷା, ଦେବୁ ବୃଦ୍ଧ କାନେ !
ଏକାଳେ କର୍ତ୍ତବ୍ୟ ପଥେ ଯେ କରେ ବାରଣ
ଶତ୍ରୁ ବୋଲି ମଣିବ ତାହାକୁ ।

ଲଳା—କାଳୀୟର ପରାକ୍ରମ ନ ଜାଣିଛୁ କିଏ,
ତୁମ୍ଭ କୋପେ କ୍ଷଣ ମାତ୍ରେ ହେବ ଭସ୍ମୀଭୂତ
ବିଶ୍ୱ ଚରାଚର;
ପିତା, ପିତା, କ୍ରୋଧ ପରିହର ।

କାଳୀୟ-ନାଗେନ୍ଦ୍ର-ନନ୍ଦିନୀ ହୋଇ, ରଣ ଭୟେ ଭୀତା !
ଏ କଳଙ୍କ କଥା,
ନ କହିବୁ କାହା ଆଗେ ।
ପଳା ପ୍ରାଣ ଭୟେ ॥

ନଳା — କାଳୀୟ ଦୁହିତା ହ୍ରଦ ନୁହେଁତ ନର୍ମିତ
ସ୍ଥାନ ଉପାଦାନେ,
ନୁହେଁତ ମୁଁ ପ୍ରାଣ ଭୟେ ସ୍ଥିତା;
ଦେଖି ସମୁଦ୍ୟତ,
ଶିଶୁ ନାଶେ, ଧର୍ମ ନାଶେ, ଅପଣା ଜନକେ,
କେମନ୍ତେ ରହିବ ପିତଃ ନ କର ବାରଣ ?
ଏଡ଼ ନ୍ୟାଯ୍ୟ ରଣ !

କାଳୀୟ-ଧର୍ମ କଥା ଶୁଣି ଶୁଣି ହେଲିଣି ସ୍ଥବିର,
ରାଖ ଅଳ୍ପ ତୋହ ଉପଦେଶ !
( କଣ୍ଠ କାଳ ରନ୍ଧ )
ଚଳମ୍ବରେ ଗଲ୍ପ ସବୁ ନାଶ
ଯାଅ ଦୂରେ ଅପସର,
ସମ୍ମୁଖେ ସମର
ଏ ସମୟ ନୁହେଁ ଅଦରର ।
( ବେଗେ ପ୍ରସ୍ଥାନ )

ନଳା— ସୁକେଶୀ, ଏବେ ଉପାୟ କଣ ସୁକେଶୀ ? କାଳୀ ବିଷରୁ କିଏ ରକ୍ଷା ପାଇବ? ଅଙ୍ଗ ସବୁ ପୋଡ଼ି ଯିବ, ସବୁ ଭସ୍ମୀଭୂତ ହୋଇ ଛାରଖାର ହୋଇ ଯିବ ।

ସୁକେଶୀ-ସଖି, ସଖି, ବିପଦରେ ଧୈର୍ଯ୍ୟ ଧର ସଖି; ଏପରି ହେଲେ କଣ କରିବା । ଶିଘ୍ର ଆସ, ଯଦି କିଛି ଉପାୟ ଥାଏ, ତେବେ ରକ୍ଷା କରିବାକୁ ଚେଷ୍ଟା କରିବା ।

ନଳା— ହଉ ଚାଲ ତେବେ, ସୁକେଶୀ, ଚାଲ, ଚାଲ । କୁଆଡେ ଯିବୁ ଚାଲ, ଚାଲ; ବିଷଜ୍ୱାଳାରେ ସବୁ ଜଳି ଗଲା—ସବୁ ଜଳିଗଲା; ହେଇ ଦେଖ, ପଦ୍ମ ବନରୁ ଧୂଆଁ ବାହାରୁଛି—

କାଳିନ୍ଦୀ ଜଳରେ ଅଗ୍ନି ଲେଲିହ ଜିହ୍ୱା ବିସ୍ତାରି କରୁଛି—ତୀର କାନନ ଧୂ-ଧୂ ହୋଇ ଜଳି ଉଠୁଛି । ଜଳେ ସ୍ଥଳେ, ଆକାଶେ, ଚାରିଆଡେ ଅଗ୍ନି । ସବୁ ପୋଡ଼ିଗଲା ସବୁ ଜଳିଗଲା—ଗଲା—ଗଲା ।

( ଝଉସ୍ୱ ପ୍ରସ୍ଥାନ )



ଷଷ୍ଠ ଦୃଶ୍ୟ ।

( ନନ୍ଦାଳୟ—ଏକାକୀ ନନ୍ଦ )

ନନ୍ଦ— ଦେଖୁଁ ଦେଖୁଁ ଟୋକାଟା କଥା ନ ମାନି ଗଲାଖଲା ! ଅଥ, ମୁଁ ଯଦି ତାକୁ ଛାଡ଼ି ନ ଥାନ୍ତି ସେ ଭଲା କମିତି ଯାଆନ୍ତା । ଦୋଷ ତା'ର, ନା ମୋର ? ନା-ତାର ଦୋଷ କିପରି ହେଲା ! ସେତ ପିଲା; ପିଲାଏ ଭୁଲ ମନ୍ଦ କଲେ ସେ ଦୋଷ ମା-ବାପଙ୍କର । ଜିଁ, ହୁଁ, ମୋର ସେଥିରେ ଦୋଷ କାହିଁ ଅଛିଲା ! ପିଏ କ'ଣ ଦେଖିଲଅ ପିଲା, ଯେଉଁ ପିଲା ମା-ବାପଙ୍କର ବୋଲରେ ଉଠନ୍ତି ! ତେବେ ମୋର ଏତିକି ଦୋଷ ଯେ, ପିଏ ଯେଉଁଥିରେ ଅନନ୍ଦର ରଗଡ଼ ଧରେ ମୁଁ ତାହା ଏଡ଼ିପାରେ ନାହିଁ । ଏଇଟା ଯଦି ଦୋଷ ବୋଲି ଲେଖାହୁଏ, ତେବେ ଜଗତରେ ସ୍ନେହ ନାହିଁ, ଆଦର ନାହିଁ; ଶରଧ ନାହିଁ ।

( ଯଶୋଦା ପ୍ରବେଶ ହେଲେ )

ଯଶୋଦା-ହଁ, ଅତି ସ୍ନେହ ଶରଧାରେ କାଳୀ ମୁହଁକୁ ଠେଲି ଦଅନ୍ତି ଏକା ! ଅଉ ଚମ୍ପୁସ କେତେ ହେଲେ ବୁଦ୍ଧି ହେବ?

ନନ୍ଦ— ସତ କହୁଛ ରାଣୀ । ମୁଁ ସବୁଦିନେ ପଛ ବୁଦ୍ଧିଆ; ତେଣୁଁକି ଗଉଡ଼ ଜାତ । ଏଇଷଣି ମନରେ ଭାବୁଛି, କହ୍ନେଇଙ୍କୁ ପଦ୍ମ ତୋଳିବା ପାଇଁ ଛୁଟି ଦେବାଟା ଆମର ଉଚିତ ନ ଥିଲା । ଅସ୍ତୁ ତମେ ଭଲ କମିଛ—

ଯଶୋଦା-ଶେଷ ବେଳକୁ ମୋ'ଉପର ଦୋଷ ଦେଉଛ ନାହିଁକି ! ମୁଁ ତ ମନାକୁ ମନା କରୁଥିଲି; ମୋ କଥା କିଏ କେହି ଗଣିଲ ନା ଶୁଣିଲ । ତମେ ତ ତାହାର କଥାରେ ଏକରକମ ସମ୍ମତ ହେଲ ।

ନନ୍ଦ— ତେବେ ତମେ କାହିଁକି ଭଲା ଜୋର କରି ଅଟକାଇ ନ ରଖିଲ ?

ଯଶୋଦା-କହିବି କଣ, କହ୍ନେଇ ମୋର ଯେତେବେଳେ ବାହାରି ଚାଲିଗଲା, ମୁଁ ମନେ କରୁଥାଏ ଅଟକେଇ ରଖିବି । କିନ୍ତୁ ମୋର କଣ ହୋଇ ଗଲା କେଜାଣି, ସେତେବେଳେ ମୋ ମୁଣ୍ଡକୁ ବୁଦ୍ଧି ଆସିଲା ନାହିଁ କି ପାଟିରୁ କଥା ବାହାରିଲା ନାହିଁ ।

ନନ୍ଦ— ମୋର କଣ ହେଲା ଶୁଣ । ମୋତେ ଯେତେବେଳେ ଯେ କଅଁଳା ପିଲାଟି ଘରୁ ଆଉ ଫେରିଲା ନାହିଁ । ମୋତେ ଲାଗିଲା ଯେପରି କହ୍ନେଇ ବିକଟ ମୂର୍ତ୍ତି ଧରି କାଳୀ ମୁଣ୍ଡରେ ଚଢ଼ି ତାକୁ ଦଳି ଦେଉଛି । ତା ଦେଖି ମୋ ସାହା ଉଡ଼ିଗଲା । ମୁଁ କଥା କହିବି କଣ !

ଯଶୋଦା-ତମର ସବୁଦିନେ ସେହି ଭଳିଆ କଥା । ଦୁଧ ପିଆ ଛୁଆଟାକୁ, ତୁମେ ବୁଢ଼ା ମିଣିପ ହୋଇ କଣ ଯେ ଭାବ, ମୁଁ କିଛି ବୁଝି ପାରେ ନାହିଁ ।

ନନ୍ଦ— ମୁଁ କ'ଣ ମନକରି ସେପରି ଭାବେଁ ? ବେଳେ ବେଳେ ତ କାହିଁକି ମୋତେ ସେ ସେହିପରି ଦିଶିଯାଏ । ମୁଁ କ'ଣ କରିବି !

ଯଶୋଦା— ମୋ ଡାହାଣ ଆଖିଟା କାହିଁକି ଫରକି ଉଠୁଛି କୁହନ? ମୋ ପୁଅର କ'ଣ ବିପଦ ହେଲାକି ! ତମ ଗୋଡ ତଳେ ପଡୁଛି ଭଲା ତମେ ଏହିକ୍ଷଣି ଯାଇ ତାକୁ ଫେରାଇ ଆଣ ଆମର ଯେତିକି ହେଲା ପଛେ ତେତିକି ଆଜି ।

ନନ୍ଦ— ମୁଁ ବି ସେଇ କଥା ଭାବୁଛି, କିନ୍ତୁ କଂସ—

ଯଶୋଦା—'କଂସ, କଂସ' ବୋଲି, ତମେ ବାଇଆ ହେଲଣି । କଂସ ଯାହା କରିବ କରୁ ପଛକେ, ତୁମେ ମୋ ପୁଅକୁ ଆଣି ଦିଅ ଏଇକ୍ଷଣି । ନୋହିଲେ ମୁଁ ଜୀବନ ରଖିବି ନାହିଁ ।

ନନ୍ଦ— ଯଶୋଦେ ଏତେ ବ୍ୟସ୍ତ ହୁଅ ନାହିଁ । ମୁଁ ଏଇ ଯାଉଛି ତାକୁ ଫେରାଇ ଆଣିବି ।

(ପ୍ରସ୍ଥାନ)

ଯଶୋଦା—ହଁ ତମେ ମୋ ନୀଳମଣିକୁ ଆଣି ଦେଲେ ଆଜି ରାତି ଭିତରେ ଗୋପ ନଗର ଛାଡ଼ି ବନ ଭିତରକୁ ଚାଲିଯିବା । ଆଉ ତେଣିକି କଂସ କ'ଣ କରିବ ଦେଖିବା ।

( ପଟ୍ଟକ୍ଷେପ )



# ତୃତୀୟ ଅଙ୍କ ।



## ପ୍ରଥମ ଦୃଶ୍ୟ ।



(ଗୋଟିଏ ନାଗ ଅନ୍ୟ ଗୋଟିଏ ନାଗକୁ ଟାଣି ଟାଣି ପ୍ରବେଶ ହେଲ)

୧ମ ନାଗ—(ଗୃହ ଅଡକୁ ସଭୟେ ଅନାଇ).ଓଃ ବଞ୍ଚିଲି ବାବା ! ନିଶ୍ୱାସ ପକେଇବାକୁ ଟିକିଏ ତରଂ ମିଳିଲା । ( ଚମକି ) ଟହଇ କାହା ପାଟି ଶୁଭୁଛି ନା କ'ଣ ! ବାପ ରେ ! ଗଲି, ଗଲି—ଧରଂ, ଧର ।

୨ୟ ନାଗ—(ଗୃହ ଅଡକୁ ଚାହିଁ) ଦୂର, ଡରୁଆ ଟା, କେହି କୁଆଡେ ନାହିଁ, ମିଛୁଟାରେ ଇମିତି ହେଉଛୁ ନା ? ତୁ ତାତେ ଭୂତ ଲାଗିଛି ନା କଣ ?

୧ମ ନାଗ—ମୋ'କଥା କଣ କହୁଛୁ ! ନିଜେ ରଜା ଯାହା ହଉଛନ୍ତି ତାଙ୍କ ଅଗରେ ଯେ ପଡ଼ଯିବ, ତା ଧଫା ଦୃଫା !

୨ୟ ନାଗ—ଅମର ସେଥିକୁ ଡର କ'ଣ, ସେ ଗଉଡ ଟୋକାଏ ଯିମିତିକା କର୍ମ କଲେ ସିମିତିକା ଫଳ ପାଇଲେ । ଅଚ୍ଛା—ହାଲିଟା କଣ କହିଲୁ ?

୧ମ ନାଗ—ବାପ ରେ, ରଜା ଅମର ଏଅତୁ ତ ରାଗରେ ଫଁ-ଫଁ ହୋଇ ଗଲେ ! ଯାଇ ଏକା ରେଟେଂ ପକେଇଲେ ଯେ, ସେ ଟୋକା ତ ପଡନ୍ତି ଗୁଲବାଜ ମେଲେଇ ! ଅନ୍ଧ ଜାଣିଛୁ ନା, ସେ ଭାର ରଚିଛନ୍ତି ଅମ ସଭିଙ୍କ ଉପରେ; କହୁଛନ୍ତି କି ଯାହାକୁ ଯହିଁଠେ ପାଇବେ ତ କୁ ହାଣରେ ଦେବେ ।

୨ୟ ନାଗ—ଆମର ଦୋଷ ?

୧ମ ନାଗ—ଦୋଷ ? କାହିଁକି, ଏହି ସାମାନ୍ୟ ଗଉଡ଼ ଟୋକାଏ ଆସି ଏତେ ସର କଲେ, ଆମେ କିଛି କରି ନ ପାରିଲେ ବୋଲି । ମୁଁ କହୁଛି, ଭଲ ଦଶା ଅଛି ତ ପଳେଇବା ଚାଲ ଏବେ । ନୋହିଲେ ଆଜି କାଳୀ ନାଗ ଆଗରେ ଆମ୍ଭର ରକ୍ଷା ନାହିଁ । ଜାଣିଲୁ ?

ଗୀତ ।

ଉଭୟେ— ଭାଇ ବୁଝିଥିବ, ଆରେ ଖବରଦାର ।
ଅଣ୍ଡାକର ଉଡ଼ ନେବେ ପଛ ଦଉଥିବ ॥
୧ମ ନାଗ—ବର୍ଷିଶୁଣି ଦେବେଇ ଟା ଉଡ଼ ଗଲା ଫର୍,
୨ୟ ନାଗ—ଶିକାରଥ ଭାଇ ମୋର ଥର୍ ଥର୍ ଥର୍,
୧ମ ନାଗ—ତୁପ୍ ତୁପ୍ ଆରେ ଭାଇ ଲୁଚି ଲୁଚି ଆ,
୨ୟ ନାଗ—ଲକ୍ଷ କର ଛଡ଼ ଛଡ଼ ମୋ ପଛରେ ଆ,
ଉଭୟେ— ଖୁଣ୍ଟେ ଗୁଣ୍ଡେ ଆ, ଖଣ୍ଡା ଧର ଆ,
କାଣ୍ଡେ ବୈଇ ମୁଣ୍ଡ କାଟି କର ଛାର ଖାର । ୧ ।
୧ମ ନାଗ—ମୋର ଲାଗେ ଲଡ଼ାଇଁଏ ଯିବାକୁ ଝାଉଁଳ,
୨ୟ ନାଗ—(ତା)ଯୁନା ଅଙ୍ଗ ଜ୍ୱଳି ଜ୍ୱଳି ଅନ୍ତ ଜନ କାଳ,
୧ମ ନାଗ—ଦେଖାନ୍ତୁ ମୋର ଆଉ ପଞ୍ଚ ବଡ଼ ଘର ପିଲ୍ଲି,
୨ୟ ନାଗ—ତା' ଗନ୍ଧରେ ଫୁଲ ଯେଗ କରେ ଫେଲ ମିଛି,
ଉଭୟେ— ମାରେ ଝକ ଝକ, କରେ ଚକ ମକ,
ଭଲ କରି ଶାଣ ନେ'ରେ ଲମ୍ବା ତଲବାର । ୨ ।

( ପ୍ରସ୍ଥାନ )

## ତୃତୀୟ ଅଙ୍କ ।

## ଦ୍ୱିତୀୟ ଦୃଶ୍ୟ ।



( ସୁକେଶୀ ପ୍ରବେଶ ହେଲା )

ସୁକେଶୀ—ସଖି ମାଳା କୁଆଡ଼େ ଗଲେ ! ଏଇଠୁଁ ଅପେ ବୋଲି କହି କେଉଁଠି ଲୁଚିଭେଇ ଗଲେ ନା କ'ଣ ! ମୁହିଁ ଅବେ ତ ଖୋଜି ଖୋଜି ଥକିଲିଣି । ଆଉ ପାରିବ ନାହିଁ । ଯା; ମୁଁ ମୋର ଏଇଠି ବସୁଛି । ଯେଉଁଠି ଥିବେ ବଳେ ଏଠିକି ଆସିବେ ।

ବାଗେଶ୍ରୀ-ଏକତାଳି

(ଗୀତ)

ଏ ଜଗତେ
କାହିଁ ଏମ ପୀରତି ଯହୁଁ ସୁଧା ଝରେ ନିରତେ ।
ଯେଉଁ ପ୍ରୀତି ଲାଗି ରବି, ଚନ୍ଦ୍ର, ତାରା,
ଭ୍ରମୁଛନ୍ତି, ଧରା ନଦୀ ପଡୁଅଛି,
ଯେଉଁ ପ୍ରୀତି ଲାଗି ଉଛୁଳେ ସାଗର,
ଝରେ ପଡ଼େ ଘନ ମରତେ ॥

(ଗୀତାନ୍ତେ ମାଳା ପ୍ରବେଶ)

ମାଳା— ସୁକେଶୀ, ସୁକେଶୀ, ଇଏ କ'ଣ ଗୀତ ଗାଇବାର ସମୟ ! ତୁ ଏଠି ଏକୁଟିଆ ଲୁଚି ଗୀତ ଗାଉଛୁ !

ସୁକେଶୀ—ଗୀତ ଗାଇବାର କ'ଣ ଗୋଟାଏ ସମୟ ଅସମୟ ଅଛି ସଖି? ହୃଦୟ ପୂର୍ଣ୍ଣ ହୋଇ ଗଲେ, ଗୀତ ଯେ ଆପେ ଆପେ ବାହାରି ଆସେ ।

ମାଳା— ମୁଁ ଜାଣେ କି, ଯାହାର ମନ ଆନନ୍ଦ ଥାଏ, ସେ ଗୀତ

ଗାଇବାକୁ ଯାଏ । କଥାରେ କହନ୍ତି "ମନ ଫୁଲଣା ଗୀତ ଗାଏଁ ।"

ସୁକେଶୀ—ଗୀତଟା ସଖି, ମନୋଭାବର ବାହ୍ୟ ପ୍ରକାଶ । ମନ ଭିତରେ ଯେତେବେଳେ ଯେଉଁ ଭାବର ପ୍ରାବଲ୍ୟ ହୁଏ, ତାହା ଗୀତ ଆକାରରେ ପ୍ରକାଶ ହୋଇ ପଡେ ସିନା ?

ମାଳା— କେ ଜାଣି, ତୋ ସବୁ ଗଢ ଅଦ୍ଭୁତ ସୁକେଶୀ । ତୁ ପ୍ରକୃତିର ବାହାର ।

ସୁକେଶୀ—ନା, ସଖି, ତୁମେ ଭୁଲ ବୁଝୁଛ । ମୁଁ ଠିକ ପ୍ରକୃତିର ଅନୁସରଣ କରେଁ । ତୁମେ କ'ଣ ସିଳ ସିଳ ଦକ୍ଷିଣା ପବନର ଗୀତ ଶୁଣି ନାହଁ ? ତୁମେ କ'ଣ ଝର ଝର ବାରିଧାରାର ଗୀତ ଶୁଣି ନାହଁ ? ସାଗର ବକ୍ଷରେ କସ୍ତୁ ପଡୁଥିବା ତରଙ୍ଗର ଉନ୍ମାଦ ଗୀତକୁ କେବେ ମନ ଦେଇ ଶୁଣିଛନା ସଖି ? ସେ କ'ଣ ଖୋଜି ଖୋଜି ଘଡ଼ିକ ଘଡ ମୁଣ୍ଡ କୋଡ଼ି ହୁଏ ! ହେଇ ଦେଟବ ଶୁଣ—

ଗୀତ ।

ସେ ପ୍ରୀତିର ଯଦ ପାଥନ୍ତି ସନ୍ଧାନ,
ଢାଲି ମୁଁ ଦଅନ୍ତି ମୋର ମନ ପ୍ରାଣ,
ଦିବସ ରଜନୀ କରି ଅରାଧନ,
ଜପୁଥାନ୍ତି ନାମ ଅବିରତେ ।

ମାଳା— ଆଉ, ଆଉ ସୁକେଶୀ; ତୋ ଗୀତ ଶୁଣିବାକୁ ମୋର ସମୟ ନାହିଁ । ଅମେ ଯେଉଁ ଥିକ ଡ଼ରୁଥିଲେ ସେହିଥି ହେଲାଣି । ଏବେ କ'ଣ କରିବା କହ ।

ସୁକେଶୀ—କ'ଣ, ହେଲା କଣ ?

ମାଳା— କାଳୀ ବକ୍ଷରେ ଯାହା ହେବାର ତାହା ହେଲା

ସୁକେଶୀ—ତେବେ ସେ କାଳିଆ କିଶୋର ଅଛନ୍ତି କେଉଁଠି ?

ମାଳା— ମୁଁ ଦେଖି ଅସିଲି ଲୋ, ଯେଉଁ ସରୋବର ମଝିରେ ମାଳ କମଳଟିଏ ଫୁଟିଛି, ବିଷ ଜ୍ୱାଳାରେ ମଉଳି ପଡ଼ୁଛି ! ଅହା ସେ କେତେ ସୁନ୍ଦର, ସୁକେଶି !

ସୁକେଶୀ—ତେବେ ଚାଲ୍ ସେଠୁଁ ନେଇ ତାଙ୍କୁ ଘରରେ ଥୋଇଅସିବା । ଏତେ ବେଳୁଁ ଉପାୟ ନ କଲେ ବିପଦ ହୋଇପାରେ ।

ମାଳା— ଆଉ ବିଳମ୍ବ କର ନା, ଶୁଣୁ ଥ । ଦୁହେଁ ଯାଇ ତାଙ୍କୁ ଧରି ଗାଁରେ ରଖି ସେବା କରିବା, ଅଉ ଗୋପପୁରକୁ ସମ୍ବାଦ ଦେବା ।

( ଉଭୟ ବେଗେ ପ୍ରସ୍ଥାନ )

## ୩ୟ ଦୃଶ୍ୟ ।

( ଜଣେ ନାଗ ସୈନିକ ପ୍ରବେଶ ହେଲା )

୧ମ ନାଗ- ଉରଗୁଡ ଡର୍, ବଇଁଶ ଯାଉକୁ ଡର୍ । ଜଣକୁ ଜଣେ ତ ମୁନିବ । ଏବେ, କାହାକୁ ସାନ କହିବ ? ରଜା, ରାଣୀ, ପୁଅ, ଝିଅ, ପୋଇଲା, ପୁରବାସୀ, ନୌକର, ବାକର, ବେଠିଅ, କୋଠିଅ—କିଏ କାହାକୁ ଭଲ ଉଣା ? ଯେଯାହା ହାତକୁତ ସାଢ଼େ-ଗଉଦ ପା' ।

( ଦ୍ୱିତୀୟ ନାଗର ପ୍ରବେଶ )

୨ୟ ନାଗ-ଏ ନାଗ ଭାଇ, କଣ ବଲ ବଲ ହଉଛୁକ ହେ ?

୧ମ ନାଗ- ଭାଇ ବଡ଼ ବିପଦ । ଏବେ ଗରୁଡଙ୍କ ସାଙ୍ଗରେ ଅମ ନାଗଙ୍କର ବିବାଦ, ସେଥିରେ ମୁଁ କୁଅଡ଼େ ଯିବି ତୋ'ପ ପୁର ଉତରକୁ ! କାହା ଜୀବନକୁ କାହାର ମୁଅଁ ସ ନାହିଁ କହିଲୁ ! ଖବର ବୋଲି ସିନା—

୨ୟ ନାଗ-ସେତ ଭଲ କଥା । ଗରୁଡ଼ ହେଁକାଏତ ସବୁ ନିପାତ ।

ବାଳ ଅଛନ୍ତି ବୁଢ଼ାଏ, ଅଛ ମାଇପେ । ଆମେ ସମସ୍ତେ ଯାଇ ସେ ଗୁଡ଼ାକଙ୍କୁ ଖିଳ ପକେଇଲେ, ବାପୁଡ଼ାଙ୍କ କୁଳରେ ବତୀ ଦବାକୁ କେହ ନ ଥିବେ ।

୧ମ ନାଗ- ଅରେ ନାହିଁ ମ, ଭୁ ତ ସବୁ ଭୁଝି ପକେଇଲୁ ! କଥା କଣକ, ରଜାଙ୍କ ଚେଲା ଝିଅ ଯଳା—ମୋତେ ପଠେଇ-ଛନ୍ତିକି--ଗୋପପୁର ନନ୍ଦ ରଜା ଘରେ-ଖବର ଦେବ, ଯେ-ତାଙ୍କ ପୁଅକୁ-କାଳୀ ଦଂଶିଛି । ସେ ଶୀଘ୍ର ଅଧିବେ ।

୨ୟ ନାଗ-କାହିଁକି ମ ? ସେ କଳା ଟୋକାଟାତ ଯିମିତ ଫନ୍ଦି ଦେଖାଉ ଥିଲା ସିମିତ ପାଉଳା ହୋଇ ପଡ଼ଛି ପାଣି ଭିତରେ । ଆଜ ଘଡ଼ିଏ ଗଲେ ତ ମର ପଚକର ଫୁଲିବ । ଇଏ ପୁଣି କି କଥାରେ ?

୧ମ ନାଗ- ବୁଝିଲୁ ନାହିଁ କରେ ବୁଝିଲୁ ନାହିଁକି ? ରଜା ଝିଅ ଯେ, ତା ରୂପ ଦେଖି ଏକାବେଳକେ ବାଇଆଣୀ । ତାକୁ ବଞ୍ଚେଇବାକୁ ପାଣିପିଇ ଲାଗିଛନ୍ତି ।

୨ୟ ନାଗ-ବାପ ଯାହାକୁ ମାରିବ, ଝିଅ ତାକୁ ରଖିବ ? ଏ ବୁଦ୍ଧି ତାକୁ କିଏ ଦେଲା ମ ?

୧ମ ନାଗ- ଯୁଗ ସେହିମତରେ ଯୁଗ ସେହିମତ । ପ୍ରେମ ଆଗରେ କ'ଣ ମା ବାପ ଅଛି, ନା ଜାତି ପତି ଅଛି ?

୨ୟ ନାଗ-ନନ୍ଦ ରଜା ଜାଣିଲେ, କିଛି ଉପାୟକର ଯଦି ବଞ୍ଚାଏ ?

୧ମ ନାଗ- କାଳୀ ବିଷରୁ ପୁଣି ବଞ୍ଚିବ କିଏ ମ ? ଏକା—

୨ୟ ନାଗ-ହେଇ ଚୁପ୍, ଚୁପ୍, ରଜା ଝିଅ ମାଳା ଅଜ ତାଙ୍କ ସଙ୍ଗି ସୁକେଶୀ ଏ ଅତକକୁ ଆସୁଛନ୍ତି । ଅଧିର ଗୋଟାଏ ହାତରେ ଧରିଛନ୍ତି କଣ ମ ?

୧ମ ନାଗ- (ଦେଖି) ହେଇ ଗଜ୍ଜିଡ଼ି ଟୋକା ମୁରଦାରଟାଲିତ ଟେକି

କର ଅଣିଲେଣିରେ । ଏ ପଳେଇ ଅ, ପଳେଇ ଅ,
ଦେଖା ପଡ଼ିଲେ ଅମ ମୁଣ୍ଡ ରହିବ ନାହିଁ ଏହିକ୍ଷଣି ।
(ଜଭୟଙ୍କ ପ୍ରସ୍ଥାନ)

(ମୂର୍ଚ୍ଛିତ ଶ୍ରୀ କୃଷ୍ଣଙ୍କୁ ଘେନି ମାଳା ଓ ସୁକେଶୀ ପ୍ରବେଶ)

ସୁକେଶୀ—ସଖି, ଏ ସ୍ଥାନ ଟି ବେଶ ନିରାପଦ, ଏଇଠି ଥୋଇବା ।
(ସେହି ସ୍ଥାନରେ ଥୋଇଲେ) ଦେଖିଲଣି ନା ସଖି,
ଏଭଳି କଅଁଳ, ନିକ ପିଲାଟାକୁ ଏ ଦଣ୍ଡ ! ରଜା ମଣିମାଙ୍କ
ଛାତି ଉପରେ ସହିଲା କୁହନି !

ମାଳା— ସଖି, କାଳୀ ବିଷରେ ଜର୍ଜ୍ଜରିତ ହୋଇ ଯେ ଏତେ
ସୁନ୍ଦର, ଖାଲି ଦେହରେ ସେ କେଡ଼େ ସୁନ୍ଦର ହୋଇ
ନ ଥିବେ । ନା ସଖି, ମୁଁ ବଡ଼ ଅଭାଗିନୀ, ପାପିଷ୍ଠା, ସେ
ଚରଣ ସେବାର ଅଯୋଗ୍ୟା; ସେଥିପାଇଁ କଳାମାଣିକ
ଆଖି ମେଲି ମୋ ଆଡ଼କୁ ଚାହୁଁ ନାହାନ୍ତି ।

(କୃଷ୍ଣଙ୍କ ପାଦତଳେ ବସି) ଗୀତ (ଲଳିତ ଭୈରବୀ-ଉତଜତି)

ଫେଡ଼ ଫେଡ଼ ହେ ନୟନ, ରାଧା ମୋହନ ।
ଗୋପିନାଥ ଗୋପୀ ଜୀବନ ॥ ଘୋଷା ॥

ନବୀନ ନୀରଦ କାନ୍ତି, ଦିଶୁଛି ମଳିନ ଅତି,
(ଏବେ) କାଳୀ ହୋଇଲାଣି ରଙ୍ଗ ଚରଣ ॥
କୁସୁମ ବିଛଣା ପରେ, ଯେ ସୁଖେ ପହୁଡ଼ କରେ
(ଏବେ) କେମନ୍ତେ କରଛି ଧରା ଶୟନ ॥
ଭୁବନ ପ୍ରିୟ ମୁରଲୀ, ଭୂତଳେ ପଡ଼ିଛି ଢଳି
(ତାକୁ) କରେ ନିଅ ତୋଳ ଅଧରେ ବନ୍ଧନ ॥
ସୁନ୍ଦର ଶିଖଣ୍ଡ ଶିଖା, ଅଳକା ତିଳକା ରେଖା,
(କାହିଁ) ଦିଶୁ ନାହିଁ ଟେ'ଟେ ଗୃହୁ ଯତନ ॥

(ଗୀତାନ୍ତେ କାଳୀୟ ପ୍ରବିଷ୍ଟ ହେଲେ)

କାଳୀୟ—ଶୁଣିଛି ମୁଁ ସବୁ କଥା ଅନ୍ତରାଳେ ଥାଇ,
ଜାଣିଛି କୌଶଳ ତୋର ।
କନ୍ୟା ରୂପେ କାଳ ହୋଇ ଜନ୍ମି ଥିଲୁ ତୁହି
କାଳୀୟ ଅଗାରେ ।
ଭୁଲି ନିଜ ଆଭିଜାତ୍ୟ, ବଂଶର ଗୌରବ,
ମର୍ଯ୍ୟାଦାରେ ଦେଇ ଜଳାଞ୍ଜଳି,
କୁଳେ ଦେଇ କାଳୀ,
ବଳଗସ୍ତ ଶତ୍ରୁ ପାଇଁ ଲଙ୍ଘିଲୁ ଜନକେ !
ପାପିଷ୍ଠା, ନାଗ ଗୃହେ ନାହିଁ ତୋର ସ୍ଥାନ ।

କାଳୀ— ପିତା, ପିତା,
ନୁହେଁ କି ନାରୀର ଧର୍ମ, ଆତୁରର ସେବା ?
ଜନନୀ, ଭଗିନୀ ରୂପେ,
ନାରୀ ତ ନ ଜାଣେ କିଛି ଶତ୍ରୁ ମିତ୍ର ଭେଦ ।

କାଳୀୟ—କଳଙ୍କିନୀ,
ଲଜ୍ଜା ନାହିଁ କାଳୀୟକୁ ପିତୃ ସମ୍ବୋଧନେ !
ଧର୍ମ ଶିକ୍ଷା କୁଳଟା ବଦନେ !
ଭାବନ୍ତୁ କି ମନେ,
କାଳୀୟ ଦଂଶନୁ କେହୁ ଲଭିବ ନିସ୍ତାର ?
ବୃଥା ଆଶା ତୋର,
କାଳୀ ବିଷେ ଏ ଶିଶୁର ମରଣ ନିଶ୍ଚୟ ।

କାଳୀ— କେମନ୍ତେ ବୁଝିବ ପିତଃ, ନାରୀର ହୃଦୟ ?
ପୁରୁଷର କାହିଁ ସେ ଶକତି ?
( ପାଦ ଧର )

କଳଙ୍କିନୀ କନ୍ୟା ତବ କ୍ଷମା ଭିକ୍ଷାକାଂକ୍ଷିଣୀ ।

କାଳୀନ୍ଦ୍ର—କ୍ଷମା ! କ୍ଷମା !

ପିତୃ ଦ୍ରୋହେ, ରାଜ ଦ୍ରୋହେ, ଜାତି ଦ୍ରୋହେ କ୍ଷମା !

ଏହ ଅଯି ଦ୍ୱେଷଶ୍ରିତ କଲନ୍ତ୍ରା କ ଚେ'ର

ପାପ ମଗ୍ନ ତନୁ,

ତେବେ ବା ଲଭିଲା ଶାନ୍ତି ପିତାର ହୃଦୟ

ତନ୍ନେ ନାଏ;

କନ୍ୟା, ନ କରବ କଳଙ୍କିତ

କାଳୀପୁର ପବନ କୃପାଣ,

ଛୁଇଁ ତୋର ପଙ୍କିଳ ଶୋଣିତ ।

ବିଶ୍ୱାସ ଘାତକା ଜାଗ,

ନାହିଁ ତୋର ନରକେ ଅଶ୍ରୟ ।

(ପଦ ପ୍ରହାର କରି ପ୍ରସ୍ଥାନ)

ନୀଳା— (ଉଠି) କି ଲୋ, ସୁକେଶି ତୁ ଅଛୁ କି କ'ଣ ?

ସୁକେଶୀ—ହଁ ସଖି, ମୋତେ ଜ୍ୱର ଚଢ଼ିବ ମାଡ଼ୁଛି ।

ନୀଳା— କର୍ତ୍ତବ୍ୟ ପାଳନରେ ଭୟ କିସ ସଖି ? ଜନ୍ମଦାତା ଜନାର୍ଦ୍ଦନ ଅମ୍ବର ସହ ସ୍ୱ ଅଛନ୍ତି । (ଚିନ୍ତା କରି) ଅଛି ସୁକେଶୀ, ମୁଁ କ'ଣ ପିତୃ ଦ୍ରୋହିଣୀ, ସ୍ୱେଚ୍ଛାଚାରିଣୀ? ନା, ନା, ପେତା ଭ୍ରାନ୍ତ, ପିତା ଅନ୍ଧ । କନ୍ୟାର କର୍ତ୍ତବ୍ୟ ପିତାଙ୍କୁ ସୁବୁଦ୍ଧି ଦେବା । କିନ୍ତୁ ପିତା ତା ଶୁଣିଲେ ନାହିଁ । କଣ ହେବ ସୁକେଶୀ ? ଏ ମୋହ ଜାଲର କପଟ ଭାଙ୍ଗିବ ସଖି ? ହେ ଅନ୍ତର୍ଯ୍ୟାମୀ, ମୋର ମୁଗ୍ଧ ପିତାଙ୍କୁ ସୁମତି ପ୍ରଦାନ କର—ଦର୍ପ ।କି ନାଶ-

ଅନ୍ତର ଜ୍ଞାନ ଚକ୍ଷୁ ଉନ୍ମିଳିତ କର । ହେ କୃପାନିଧି,
ଏ ଦାସୀର କାତର ପ୍ରାର୍ଥନା କି ଶୁଣିବ ନାହିଁ ନାଥ ?

ଗୀତ ।        ( ବେହାଗ ମିଶ୍ର )

ହର ହେ ଗୋଲକ ବିହାରୀ ।
ଦୀନବନ୍ଧୁ ଦୟାସିନ୍ଧୁ ଭବ ଭୟ ହାରୀ ॥

ଜୀବନେ ମରଣେ ସଦା                    କରଇ ତୁମ୍ଭର ଆଶ,
ଧାଉଁଛି ଆକୁଳ ପ୍ରାଣ                    ତୁମ୍ଭର ଚରଣ ପାଶ,
ଧରିଛି ତୁମ୍ଭର ନାମ                    ଅନ୍ତରେ ହେ ପୀତବାସ,

(ଏ) ସଂସାର ପାଶୋର ।

ଏ ଦେହ, ହୃଦୟ, ପ୍ରାଣ                    ସକଳ ତୁମ୍ଭର ଗଢ଼ା,
ଏ ଜଗତେ କିଛି ନାହିଁ                    ଶ୍ରୀନିବାସ ତୁମ୍ଭ ଛଡ଼ା,
ତୁମ୍ଭ ସେବା ପାଇଁ ମୋର                    ଯେତେକ ଇନ୍ଦ୍ରିୟ ଲୋଡ଼ା

(ହେ) ତ୍ରିତାପ ନିବାର ।

ସୁବେଶୀ—ଦେଖ ସଖି, ଜଣେ ବୃଦ୍ଧ ଏଆଡ଼କୁ ଆସୁଛନ୍ତି । ବୋଧ-ହୁଏ ଏହାଙ୍କ ପିତା । ଆମେ ଅନ୍ତରାଳରେ ରହିବା ଆସ ।

(ଉଭୟଙ୍କ ପ୍ରସ୍ଥାନ)

(ନନ୍ଦ ପ୍ରବେଶ ହେଲେ)

ନନ୍ଦ— ହେଇ ତ, ମୋ ଲବଣି ପିତୁଳା ନୀଳମଣିର କୋମଳ ତନୁ ଏଇଠି ଧୂଳିରେ ପଡ଼ି ରହିଛି । କେହି ତ କୁଆଡ଼େ ନାହାନ୍ତି ! ହାୟ, ହାୟ ପିତା ହୋଇ ମୁଁ ଏ କଅଁଳା ପିଲାକୁ କାଳ ମୁହଁକୁ ପେଲି ଦେଲି ! ଧିକ ମୋତେ । ଏ ବୃଦ୍ଧ ବୟସରେ ବିଧାତା କପାଳରେ ଏ ଦୁଃଖ ଲେଖି ଥିଲା !

(ବେଗରେ ଯଶୋଦା ପ୍ରବେଶ ହେଲେ)

ଯଶୋଦା— କାହ୍ନୁ, କାହ୍ନୁ, ମୋ ଦୁଃଖି ଧନ କାହ୍ନୁ ? ( କୋଳରେ ଧରି ) ମୋ ରଙ୍କୁଣୀ ନିଧିରେ, ମୋ ଦୁଃଖ ସଙ୍ଖାଳିରେ, ସେ ଚନ୍ଦ୍ର ବଦନରେ ଥରେ ମା ଡାକିଲୁ ତ ଶୁଣିବି। ଏଇ କାହ୍ନୁ କି ? ନା, ମୁଁ ତୋର ମା ନୁହେଁ । ମା' ହୋଇ-ଥିଲେ ଯଶୋଦା ଏତେବେଳ ଯାଏ ପ୍ରାଣ ଧରି ରହନ୍ତା କିପରି !

ନନ୍ଦ— ରାଣି, ବିପଦ ବେଳରେ ଅଧୈର୍ଯ୍ୟ ହେଉଛ କାହିଁକି ? ତମେ ଏପରି ହେଲେ ଏଥିରେ ଉପାୟ ବିଧାନ କରିବ କିଏ ? ହେଇ କହୁଛି ସଖାମାନେ ଆସିଲେଣି ତାଙ୍କର ଡାକରେ ନିଦ୍ରା ଭାଙ୍ଗି ସେ ସେଥିରୁ ଉଠି ଯାଇ ଖେଳିବାକୁ ଯାଏ ।

( ସଖାମାନଙ୍କର ପ୍ରବେଶ )

ବାପ, ତୁମେ ଥରେ ତୁମ ଜୀବନ କହ୍ନାଇକୁ ଡାକ, ତୁମର କଥା ଶୁଣିଲେ ବା ସେ ଚେତାପାଇ ଉଠିବ ।

(ସଖାମାନଙ୍କର ଗୀତ) ଭଙ୍ଗା କୀର୍ତ୍ତନ-ଏକତାଲି ।

ଉଠରେ ଉଠରେ ଜୀବନ କହ୍ନାଇ,
ବେଣୁ ଧରି କରେ ବଜାଅରେ ଭାଇ ।
ଧେନୁ ବତ୍ସାଗଣ ବିଷାଦ ନୟନେ,
ତୋହ ଆନନକୁ ରହିଛନ୍ତି ଚାହିଁ । ଘୋଷା ।।
ଛିଡା ହୋଇ ଭାଇ କି ଭଙ୍ଗ ଭଙ୍ଗୀରେ,
ହସି ହସି ବାରେ କଥା କହ ଧୀରେ,
ତୋ ରଙ୍ଗ ଅଧରେ ହସ ନ ଦେଖିଣ,
ଏ ଦେହ ପିଣ୍ଡରେ ପ୍ରାଣ ରହୁନାହିଁ ।।

ବ୍ରଜ ସଖାଗଣ କରନ୍ତୁ ନ ରୋଷ,
ତେଣୁ ପର୍ଶ ହୁଭ କରଅଛୁ ଶେଷ,
ତୁ ହେଲେ ଏଭଳ ଅମ୍ଭେ ସର୍ବେ ମିଳ,
ନାଶିବୁ ଜୀବନ କାଳୀଦହ ଖାଇ ॥
ମଧୁରେ ମଧୁରେ ବଜାଇ ମୁରଲୀ,
ରୁଣୁ ଝୁଣୁ ଝୁଣୁ ନାଚ ଛନ ଛନ,
ବାଳୁଙ୍ଗ ପଛରେ ଦେଇ କରତାଳ,
ବୃନ୍ଦାବନେ କାହ୍ନୁଁ ବୁଲୁ ନାହୁଁ ଯାଇଁ ॥

ନନ୍ଦ— ଶ୍ୟାମ କାହିଁ ଗଲା ? ସେ କ'ଣ କାହ୍ନେଇ କଥା ଜାଣି ନାହିଁ ଏତେବେଳଯାଏ ? ଯାଅ ବାପ ସମସ୍ତେ, ସେ ଯେଉଁଠି ଅଛି ତାକୁ ଖୋଜି ଆଣିବ ।

(ସଖାମାନଙ୍କର ପ୍ରସ୍ଥାନ)

ଯଶୋଦା – କା'ହିଁ ମୋ ହୃଟନ୍ଥର ତ ତେବେ ସୁଖୀ କଥା କହୁ ନାହିଁ । ତାର ପ୍ରିୟ ସଖାଙ୍କ ତୁଣ୍ଡ ଶୁଣିଲେ ସେ ନନ୍ଦରୁ ଉଠି ବାହ୍ରା ହୋଇଯାଏ । ଇଏ କ'ଣ ହେଲା ? କାହ୍ନେଇ ମୋର କଣ ଆଉ କଥା କହିବ ନାହିଁ, ମା' ମା' ବୋଲି ସର ଲବଣୀ ପାଇଁ ଆଉ କଣ ଅଳି କରିବ ନାହିଁ, ଓଃ—ଆକାଶ, ଖଣ୍ଡ ଖଣ୍ଡ ହୋଇ ଖସି ପଡ, ବସୁଧା ଦ୍ୱିଧା ହୋଇଯା । ବାପରେ, ଲବଣୀ ଚୋରି କରି ଥିଲୁ ବୋଲି ତୋତେ ମୁଁ ବାନ୍ଧି ପକାଇ ଥିଲି; ସେଥିପାଇଁ କଣ ରାଗ କରିଛୁ ! ମୋ ଆଖିଆଗରେ ଏବେ ଉଠ । ମୁଁ ଆଉ ତୋତେ କିଛି କହିବି ନାହିଁ—ନା, ତେବେ ବି ତ ଶୁଣୁ ନାହିଁ । ବଜ୍ର, ଯଶୋଦା ମୁଣ୍ଡରେ ଖସି ପଡ଼ । ହୃଦୟ ବିଦୀର୍ଣ୍ଣ ହୋଇ ଯା ।— (ମୂର୍ଚ୍ଛା)

ନନ୍ଦ— ଯଶୋଦେ, ଯଶୋଦେ, ପାଗଳ ହେଲ ନା କଣ ? ଧୈର୍ଯ୍ୟ ଧର । ଏହୁ ଯେ ଗୋପ କନ୍ୟାମାନେ ଆସି-ଲେଣି ।

( ଗୋପକନ୍ୟା ମାନଙ୍କର ପ୍ରବେଶ )

ତୁମ୍ଭେମାନେ ତୁମ୍ଭର ବନ୍ଧୁ ସ୍ନେହର ନୀଳମଣିକୁ ଥରେ ଡ଼ାକ ଭଲା ।

( ଗୋପକନ୍ୟାମାନଙ୍କର ଗୀତ )

ଗୋପକନ୍ୟାଗଣ—

ବ୍ରଜ କୁମୁଦ କାନନ ଇନ୍ଦୁ ! ଗୋପେ ଜନ ହୃଦ ମୁଦ ସିନ୍ଧୁ ।
ଅଜ ଗୋପପୁର, କରି ଅନ୍ଧକାର,
(କାହିଁ) ସଜନ ଜୀବନ ବନ୍ଧୁ ହେ— ମୋହନ ॥
ତୁମ୍ଭେ ହୋଇଲେ ଏଡ଼େ ନିର୍ଦ୍ଦୟ, ଫାଟି ଯିବ ଯେବେ ଏ ହୃଦୟ,
ନସାନ୍ତା ଯଶୋଦା, ବରଜ ନାରେ,
( ଆଉ) କେମନ୍ତେ ଧରିବେ ଅସୁ ହେ ମୋହନ ॥
ବ୍ରଜ ବାଳିକା ନେତ୍ର ପସର, ଅଭିମାନ କରୁଅଛ ଯଥା,
କୁସୁମ ଶଯ୍ୟନ, ତ୍ୟଜି ଜୀବଧନ,
( ତେଣୁ ) ଅଶ୍ରୁ କରନ୍ତି ଧାର ହେ—ମୋହନ ॥
ଅଛୁ ନଟବର ନବର ଦଣ୍ଡ, ଧୂଳି ଶୋଭ ତ୍ୟଜି ଏବେ ଉଠ,
ପୀତ ପଟ ପିନ୍ଧା ନଟବର ବେଶ,
(କାହିଁ) ଦଶୁନାହିଁ ଝଟ ଝଟ ହେ—ମୋହନ ॥

( ଗୀତାନ୍ତେ ବଳରାମ ପ୍ରବେଶ )

ବଳରାମ—କୃଷ୍ଣର କୋମଳ ଅଙ୍ଗେ କେ କଲା ଆଘାତ,
କହ ତାତ, କାହିଁ ଗଲା ଦୁଷ୍ଟ ନାଗ ରାଜ !

ଅରେ ଅରେ ଦୁର୍ବୁଦ୍ଧି ପିଶାଚ,
ସବଂଶେ ପେଶିବ ତୋତେ ଯମନ ସଦନେ,
ମୂଷଳର ପ୍ରଚଣ୍ଡ ପ୍ରହାରେ;
ଉପାଡ଼ ଲଙ୍ଗଳ ମୁନେ ତୋର ବାସସ୍ଥଳୀ
ଭସାଇବ ଯମୁନା ତରଙ୍ଗେ ।
କେ କରିବ ରକ୍ଷା ଏବେ କହ ଅଛି ତୋର,
ଯମ କୋପେ ନାହିଁ ଟି ନସ୍ତାର ।

(ଏହି ସମୟରେ ଅକାଶ ବାଣୀ ହେଲା)

(ଶାନ୍ତ ହୁଅ ପ୍ରଭୁ, ତୁମ୍ଭ କୋପରେ ସୃଷ୍ଟି ନାଶ ଯିବ ।
ବିନତା ନନ୍ଦନ ଗରୁଡଙ୍କୁ ସ୍ମରଣ କର )

ବଳରାମ—ଏ ଶୂନ୍ୟ ବାଣୀ କାହିଁ ହେଲା ! ଅଚ୍ଛା ତେବେ ନାଗ ବୈରୀ ଗରୁଡଙ୍କୁ ସ୍ମରଣ କରେଁ ।

(ସ୍ମରଣ କଲେ ଗରୁଡ ପ୍ରତ୍ୟକ୍ଷ ହେଲେ)

ଗରୁଡ଼— (କରଯୋଡ଼) ଏ ଦାସକୁ ଅଜ୍ଞା କରନ୍ତୁ ପ୍ରଭୁ !

ବଳରାମ—ଶ୍ରୀକୃଷ୍ଣ କାଳୀୟନାଗ ଦଂଶନରେ ମୂର୍ଚ୍ଛାଗତ ହୋଇ ଅଛନ୍ତି । ତୁମ୍ଭେ ଅମୃତ ଦାନ କଲେ ସେ ସଞ୍ଜ୍ଞା ଲାଭ କରିବେ ।

(ଗରୁଡ଼ ଶ୍ରୀକୃଷ୍ଣଙ୍କ ମୁଖରେ ଅମୃତ ଦାନ କଲେ
ଓ କୃଷ୍ଣ ସଞ୍ଜ୍ଞାଲାଭ କଲେ)

ଗରୁଡ଼— ପ୍ରଭୋ ଅଜ୍ଞା ଦଅନ୍ତୁ ଏହି ଦୁର୍ବୁଦ୍ଧି ନାଗକୁ ସବଂଶରେ ଚିଲ ପକାଇ ଗ୍ରାସିଯିବି । ଏହା ତାହାର ଦୁଷ୍କୃତର ଉପଯୁକ୍ତ ଦଣ୍ଡ ହେବ ।

ବଳରାମ—ଧନ୍ୟ, ପକ୍ଷିରାଜ, ତୁମ୍ଭ ଲାଗି ଆଜ ଶ୍ରୀକୃଷ୍ଣ ଚେତନା ଲାଭ କଲେ । କାଳୀୟର କୌଣସି ଅନିଷ୍ଟ ନ କର ଏବେ ତୁମ୍ଭେ ସ୍ୱସ୍ଥାନକୁ ଗମନ କର । ଆଉ ଗୋଟିଏ କଥା; ଏହି କାଳୀ ଦହର ଜଳ ବିଷାକ୍ତ ଅଛି । ଏଥିରେ ଅମୃତ ସଂଯୋଗ କରି ଏହାର ବିଷ ହରଣ କର । ଆଜଠାରୁ ଏହା ପବିତ୍ର ତୀର୍ଥରୂପେ ପରିଗଣିତ ହେଉ ।

ଗରୁଡ଼— ପ୍ରଭୁଙ୍କର ଆଜ୍ଞା ଶିରୋଧାର୍ଯ୍ୟ ।

(ଗରୁଡ ପ୍ରସ୍ଥାନ କଲେ)

( ପଟକ୍ଷେପ )



# ଚତୁର୍ଥ ଅଙ୍କ ।



## ପ୍ରଥମ ଦୃଶ୍ୟ ।



କାଳୀ ହ୍ରଦରେ ନାଗକନ୍ୟାମାନେ ସନ୍ତରଣ କରୁଁ କରୁଁ

ଗୀତ ।

ସିନ୍ଧୁ-ବେହାଗ—ଖେମଟା

ଜଳ ଲହରୀ ।
ଦୋହଲି ଅଛେ ଖେଳ ଖେଳ ଚକା ଭଉଁରୀ ।
ଝୁଲି ଝୁଲି ହସାଏ ମାତ,
ବୁଲି ବୁଲି ଫୁଲାଏ ଛାତ,
ଭୁଙ୍ଗ ଭୁଙ୍ଗ ଖର ତରଙ୍ଗ ସୁଖେ ବାହାର ।
ନାଚେ ଢେଉ ତାଳକୁ ତାଳ,
ବନ୍ଧ ବାଏ ମୁକ୍ତା ମାଳ,
ମୁକ୍ତ ବେଣୀ ମୁକ୍ତ କର ଅସ ପହଁର ।

(ନାଗ କନ୍ୟାଗଣ ଗୀତ ଗାଇ
ପହଁର ପହଁର ଅଦୃଶ୍ୟ ହୋଇଗଲେ)



## ଦ୍ୱିତୀୟ ଦୃଶ୍ୟ



( ରକ୍ତରଞ୍ଜିତ ଅସି ହସ୍ତେ ମାଳାର ହସ୍ତ ଧାରଣ କରି
କାଳୀପ୍ରୁ ପ୍ରବେଶ ହେଲେ)

କାଳୀପ୍ରୁ — ମାଳା, ରାକ୍ଷସୀ, ତୋହର ଲାଗି, ଅଜ, ନାଗ କୁଳର ଏ ଲାଞ୍ଛନା । ବିଶ୍ୱାସ ଘାତକୀ, ସ୍ୱହସ୍ତ ଛଡ଼ ଭୁଜଙ୍ଗ ନିକଟରେ ପ୍ରକାଶ କରିଛୁ । ତୋହର ମନ୍ତ୍ରଣାରେ ଗରୁଡ଼ ଅସି ମୃତ ଶତ୍ରୁକୁ ପ୍ରାଣ ଦାନ କରୁଅଛି; ନାଗ ବଂଶ ଧ୍ୱଂସ କରିବାକୁ ବସିଛି । ଅନେକ ସହ୍ୟ କଲିଣି, ଅଜନା ଧୈର୍ଯ୍ୟର ସୀମା ଅଛି, ସହିଷ୍ଣୁତାର ମାତ୍ରା ଅଛି ।

ମାଳା— ପିତା, ପିତା !

କାଳୀପ୍ରୁ— ପିତା ! ପିତା କଏ ମାଳା ? ନା, ମୁଁ ପିତା ନୁହେଁ— ପିଶାଚ । ରାଜ ଧର୍ମ, ରାଜ ଧର୍ମ । ରାଜ ଧର୍ମ ବଡ଼ କଠିନ ମାଳା । ସେ ସ୍ନେହର ମମତା ରଖେ ନାହିଁ—ପ୍ରୀତିର ମର୍ଯ୍ୟାଦା ରଖେ ନାହିଁ । ଅଜ ହେଉ ତିକ୍ତ ସ୍ନେହରେ ଜଳାଞ୍ଜଳି ଦେଇ, ସେହି ପ୍ରୀତି ମସ୍ତକରେ ପଦାଘାତ କରି ଏ ଘୋର ଅବମାନନାର ପ୍ରତିଶୋଧ ନେବି । ଏ କଳଙ୍କ ପ୍ରକ୍ଷାଳନ କରିବ, ତୋହରି ରକ୍ତରେ । ଶିଶୁ ହତ୍ୟା ମହାପାପର ପ୍ରାୟଶ୍ଚିତ୍ତ, କନ୍ୟାର ଶୋଣିତରେ ପିତାର ତର୍ପଣ !

( ରାଜଲକ୍ଷ୍ମୀ ପ୍ରବେଶ ହେଲେ )

ରାଜଲକ୍ଷ୍ମୀ--ଅରେ ଅରେ ମଦାନ୍ଧ ବର୍ବର,
ଏହିକି ତୋ ରାଜ ଧର୍ମ !

ଏଥିପାଇଁ କରୁ ଏତେ ଅମ୍ଭ ଅହଙ୍କାର !
ଗୋଲୋକ ବିହାରୀ ହରି ନର-ରୂପ ଧରି,
ଜନ୍ମିଛନ୍ତି ଅବତରି ଏବେ ଗୋପପୁରୀ,
ପଦ୍ମ ସରୋବର ତୀରେ, ଖେଳନ୍ତି ବିହରି;
ନ ପାରିଲୁ ଚିହ୍ନି ତାଙ୍କୁ ଗର୍ବର ପ୍ରଭାବେ !
ପୁଣ୍ୟବତୀ ଲକ୍ଷ୍ମୀ ସ୍ୱରୂପିଣୀ,
କୃଷ୍ଣ ପ୍ରୀତିମତି ଜାଳା, ନାଗ କୁଳ ମଣି,
ପିତା ହୋଇ, ରାଜା ହୋଇ କେଉଁ ଦୋଷେ ତୁହି,
ନାରୀ ବଧ ମହାପାପେ ବଳାଇଛୁ ମନ ?
ରେ ଅଧମ, ନାଗ କୁଳ ରାଜଲକ୍ଷ୍ମୀ ମୂର୍ତ୍ତି,
ଆଗେଅଛି ତୋହଠାକୁ ଦେଖି ଅମଙ୍ଗଳ,
ରେ, ରେ, ଦୁଷ୍ଟ ନାଗ,
ଶୁଣ, ଶୁଣ ମୋର ଉପଦେଶ,
ଦୁଷ୍ଟ ବୁଦ୍ଧି ବଶେ,
ଆପଣାର ସର୍ବନାଶ ନ କର ବରଣ ।

କାଳୀୟ—ଜାଳା, ଜାଳା, ଏବେ ଉପାୟ କଣ ଜାଳା ? ଏ କି ଇନ୍ଦ୍ରଜାଲ !

ଜାଳା— ଉପାୟ ! ଏକମାତ୍ର ପଦ୍ମ ଲୋଚନ ଜନାର୍ଦ୍ଦନଙ୍କ ଛଡ଼ା ଆଉ ଅନ୍ୟ ଉପାୟ କ'ଣ ଅଛି ପିତା ?

କାଳୀୟ—ମୁଁ କିଛି ବୁଝି ପାରୁ ନାହିଁ । ସେହି ଗୋପଦେଶୀ ଅପୂର୍ବ ବାଳକ କିଏ ମା ? ଏ କି ମାୟା ଜାଳା ?

ଜାଳା — ଆଉ ବୁଝିବାକୁ ବାକି କଣ? ପକ୍ଷୀରାଜ ଗରୁଡ଼ ମାହାଙ୍କର ଅଙ୍କଶାୟୀ, ଯେ ଆଉ କିଏ ହୋଇପାରେ ପିତା ! ଅନ୍ତେ-ମାତ୍ରେ ନିଜ, ସେହି ଏକା ପରମାତ୍ମା । ତାଙ୍କ ସମ୍ମୁଖରେ

ଜୀବର ଅଚ୍ଛେଦ୍ୟ, ଅଭେଦ୍ୟ ସମ୍ବନ୍ଧ । ଜୀବ ଦାସ, ସେହି ପ୍ରଭୁ । ଜୀବ ପ୍ରକୃତି, ସେହି ପୁରୁଷ । ଜୀବ ସ୍ତ୍ରୀ, ସେହି ତାହାର ଏକମାତ୍ର ସ୍ୱାମୀ । ସେହିଁ ଜଗତର ସ୍ୱାମୀ, ପିତା ।

କାଳୀୟ—ଜାଳା, ମୋର ବୁଦ୍ଧି ଭ୍ରଷ୍ଟ ହୋଇଗଲାଣି, ଜ୍ଞାନ ହଜି ଗଲାଣି, ବିବେକ ଶୂନ୍ୟ ହୋଇଗଲିଣି । ତୁହି କହିଦେ ମା, ମୁଁ କଣ କରିବି—କହ କହ ଜାଳା, ନାଗ ବଂଶ ରକ୍ଷାର ଅନ୍ୟ ଉପାୟ କଣ କହ ? ତୁ କନ୍ୟା ହୋଇ କନ୍ୟାର କର୍ତ୍ତବ୍ୟ ପାଳନ କରୁଛୁ; ନାଗ ହୋଇ ନାଗର ଧର୍ମ ରକ୍ଷା କରୁଛୁ—କିନ୍ତୁ ମୁଁ ପିତା ହୋଇ ପିତାର କର୍ତ୍ତବ୍ୟ କରୁନାହିଁ; ପ୍ରଭୁ ହୋଇ ପ୍ରଭୁର ମର୍ଯ୍ୟାଦା ରଖିନାହିଁ । ତୁ ପୁଣ୍ୟବତୀ ଜାଳା—ତୁ ଭାଗ୍ୟବତୀ ଜାଳା । ମୁଁ ପାପିଷ୍ଠ, ତୋ ପରି କନ୍ୟାର ଜନକ ହେବାର ଅଯୋଗ୍ୟ । ମୋର ପାପର ପ୍ରାୟଶ୍ଚିତ୍ତ କାହିଁ ଜାଳା—ମୋର କୃତଘ୍ନତାର ଶାନ୍ତି କାହିଁ ଜାଳା—ମୋର ଅପରାଧର କ୍ଷମା କାହିଁ ଜାଳା ?

ଜାଳା— ପିତା, ପିତା, ଏଥିପାଇଁ ଏତେ କାତର ହେଉଛ କାହିଁକି? ଏହା ସେହି ଲୀଳାମୟଙ୍କର ଲୀଳା ମାତ୍ର । ସେହି ଅଭୟ ପଦ୍ମର, ଶରଣ ରକ୍ଷଣ ବାନାର ଆଶ୍ରୟ ନେଲେ ସମସ୍ତ ସନ୍ତାପ ଦୂର ହୋଇ ଯିବ । ତୁମ୍ଭେ ପ୍ରଭୁଙ୍କ ପାଦ ତୋଳି ତାଙ୍କର ଶ୍ରୀଚରଣ ତଳେ ଅର୍ପଣ କରି କ୍ଷମା ଭିକ୍ଷା କର ।

କାଳୀୟ—( ଚମକିତ ଭାବରେ କିଛି କ୍ଷଣ ରହି ) ନା ନା, ଜାଳା ଖାଲିତ ସେତିକି ନୁହେଁ । ଅଧିକ କିଛି ମୋର ଦେବାର

ଅଛ । ( ମାଳାର ହାତ ଧରି ) ଯେ ବଡ ଅମୂଲ୍ୟ ରତ୍ନ ମୋର ପ୍ରାଣ ଠାରୁ ପ୍ରିୟତର । ବଡ ସ୍ନେହର, ବଡ ଆଦରର, ବଡ଼ ଯତ୍ନର ଧନ ।

ମାଳା — ( ଯାଉଁ ଯାଉଁ ସ୍ୱଗତ ) ଏତେ ଦିନେ ଏ ଦାସୀର କାତର ପ୍ରାର୍ଥନା କର୍ଣ୍ଣ ଶୁଣିଲ ପ୍ରଭୁ ।

[ଉଭୟେ ପ୍ରସ୍ଥାନ]



## ତୃତୀୟ ଦୃଶ୍ୟ ।



ଯଶୋଦା — ହେଇ ଦେଖୁଛନା ମୋ କଳାମାଣିକ ଉଠି ବସିଲଣି ।

ନନ୍ଦ — ମୁଁ କହୁଥିଲି ସବୁ ସେ. କଛ ନୁହେଁ । ତୁମେ ଖାଲି ତୁଚ୍ଛା କଥାରେ ଏତେ ବ୍ୟସ୍ତ ହେଉ ଥିଲ ।

କୃଷ୍ଣ — ମା, ବାପା, ତୁମେ ସମସ୍ତେ ଏଠିକି ଆସିଛ କାହିଁକି ? ମୋତେ ବା କାହିଁକି ଘେରି ବସିଛ । ମୁଁ କଣ ଶୋଇ ପଡ଼ି ଥିଲି ମା ?

ନନ୍ଦ — ହଁ, ବାପ, ତୁ ଏଠି ଏକୁଟିଆ ଶୋଇ ପଡିଥିଲୁ । ଏବେ ଚାଲ ଘରକୁ ଯିବା ।

କୃଷ୍ଣ — ଅମେତ କାଳୀ ଦହରେ ପଦ୍ମଫୁଲ ତୋଳିବାକୁ ଅସିଛୁଁ । ଫୁଲ ନେଇ ନଗଲେ କଂସ ତେଣେ ଦଣ୍ଡିବ ସବୁ !

ନନ୍ଦ — ଫୁଲତୋଳାରେ ଅଉ ଅମର ଦରକାର ନାହିଁ । ଚାଲ ବାପ ସମସ୍ତେ ଘରକୁ ଯିବା ।

କୃଷ୍ଣ — ଅମର ଫୁଲତୋଳା ତ ସର ନାହିଁ । ମୁଁ ପୁଣି କାଳୀ

ଦଂଶନେ ଯିବି । ତୁମେ ମୋତେ ମନା କରୁଛ କାହିଁକି
ବାପା ?

ବଳରାମ—କହୁଛି ରେ, ପୁଣି ତୋତେ ଜଣେ ଛନ୍ଦ ଦେବ । ତୁ
ପହଁରି ପହଁରି ପଦ୍ମ ତୋଳିବା ବେଳରେ କାଳୀୟ ନାଗ
ତୋତେ ଦନ୍ତାଘାତ କରିଥିଲା । ତୁ ପଞ୍ଚ ବିଷ ଜ୍ୱାଳାରେ
ମୂର୍ଚ୍ଛାଗତ ହୋଇଥିଲୁ ? ଗରୁଡ଼ ଆସି ଅମୃତ ଦାନକରି ସେ
ମୂର୍ଚ୍ଛା ଭଙ୍ଗିଲେ ।

କୃଷ୍ଣ— ହେତେ ଭାଇ, ମୁଁ ତ ଏତେ କଥା ଜାଣି ନ ଥିଲି,
ଏତେ ଦର୍ପ ବର୍ବର ନାଗର !
କେଉଁ ବଳେ କୃଷ୍ଣ ସଙ୍ଗେ ବୈରିତ୍ୱ ଧରୁ,
କୃଷ୍ଣ ଅଙ୍ଗ କରୁଛୁ ଦଂଶନ ।
ବିଷ ମଦେ ହୋଇଛୁ ଯେ ମତ୍ତ,
ମଣିଛୁ ଜଗତେ ତୋର ଅଖଣ୍ଡ୍ୟ ପ୍ରତାପ ।
ଦେହ ଗର୍ବ ଚୂର୍ଣ୍ଣ ଅଜ କରିବି ତାହାର ।
କନ୍ଦ୍ର, ଯଦି ଶମ୍ଭୁ ହେବେ ପୁଣି କରେ ଛଳ,
ଦୁଷ୍ଟ ନାଗକୁଳ,
ନିଷ୍ପେଷିତ କରିଦେବ ଯେଣି ସୁଦର୍ଶନ ।
ଦେଖେ କିଏ କରେ ରକ୍ଷା କୃଷ୍ଣ କୋପାନଳୁଁ ।
(କାଳୀୟ ନାଗର ହାତ ଧରି ପ୍ରବିଷ୍ଟ ହେଲେ)

କାଳୀୟ—(କର ଯୋଡ଼ି ଉପସ୍ଥିତ ହୋଇ)
ଚକ୍ରଧର,
କ୍ରୋଧାନଳ ସମ୍ବର ସମ୍ବର,
ଇଚ୍ଛା ମାତ୍ରେ ଯାର,
କୋଟି ବିଶ୍ୱ ହୋଇପାରେ କ୍ଷଣେ ଭସ୍ମୀଭୂତ,

ଶୋଭେ କି ତାହାର କେପ କ୍ଷୁଦ୍ର ନାଗ ପ୍ରତି ?
ସଚେତନେ କରିଥିଲ ସଖି ବନ୍ଧୁକାର୍ଯ୍ୟ,
ତୋହ ପଦ ପୂଜା ପାଇଁ ଏହୁ ପ୍ରସ୍ତବନ ।
ଜ୍ଞାତସାର ଦଳ ପୁଷ୍ପ ଅଣିଅଛି ଦାଯ,
ଭେଟିବାକୁ ତୋହ ସନ୍ନିଧାନେ ।
କମଳା ସେବିତ ସେହୁ କୋମଳ ଚରଣେ,
କରଛି ଅଞ୍ଜଳେ ଦୋଷ;
ହୃଷିକେଶ,
କାଳୀ ନାଗ ଶର ଅପରାଧୀ,
କୃପାନିଧି—କୃପାକର ବାରେ ।

( କାଳୀୟ ଦଣ୍ଡବତ ପ୍ରଣିପାତ କଲେ )

କୃଷ୍ଣ— (ସ୍ୱଗତ) ଭକ୍ତର ଅନ୍ତର ବାସନା ମୋତେ ପୂରଣ କରିବାକୁ ହେବ । ପ୍ରେମମୟୀ, ଭାଗ୍ୟବତୀ, ନାଗ ପତ୍ନୀ ନେଙ୍କର ମାନଙ୍କର କାତର ପ୍ରାର୍ଥନା ରକ୍ଷା କରିବାକୁ ହେବ । ତେବେ କାଳୀୟର ଗର୍ବ ଗଞ୍ଜନ ଛଳରେ ତାହାର କୃପା ଦଣ୍ଡ ବିଧାନ କରିବ ।
ପିତା, ଏ ଅପୂର୍ବ ବ୍ୟକ୍ତି କି କାଳୀ ନାଗ ?
ମୋର ଇଚ୍ଛା ହେଉଛି ଏହାର ପ୍ରଶସ୍ତ ସ୍କନ୍ଧରେ ଚଢ଼ନ୍ତି ।

(କୃଷ୍ଣ କାଳୀୟ ମସ୍ତକରେ ଛିଡ଼ା ହେଲେ)

କାଳୀୟ—ନାଗ କୁଳେ ଜନ୍ମ ମୋର ହୋଇଲା ସଫଳ,
ସ୍ୱର୍ଗମର୍ତ୍ତ୍ୟ ରସାତଳେ,
କିଏ ଅଛି ଏତେ ଭାଗ୍ୟବାନ ?
ବ୍ରହ୍ମା, ଶିବ, ପୁରନ୍ଦର ଯୋଗୀନ୍ଦ୍ର ମଣ୍ଡଳୀ,
ଯେଉଁ ପଦ ଧ୍ୟାନ ସଦା ରତ,

ଯେଉଁ ପଦ ସେବା ଲଭି କମଳା ତୁଳସୀ,
ଧରଛି କାଳୀୟ ଶିର ସେ ଚରଣ ଦ୍ୱୟ ।
ତ୍ରିଦ୍ୱ, ତତ୍ତ୍ୱ, ଦୟାମୟ ବାଞ୍ଛା କଳ୍ପତରୁ,
ମଦମତ୍ତ କାଳୀୟର ଦର୍ପନାଶ ଛଳେ,
ବହିଲ ଏ କୃପାଦଣ୍ଡ, ଦଳ ତା ଗରବ,
ଦଳି ମାଥ ବଢିଗଲା ଗୌରବ ବାସର ।
( ଏହି ସମୟରେ ନାଳା ପ୍ରକୃତ ନାଗବାଳାଗଣ
ପୁଷ୍ପାଞ୍ଜଳି ଘେନ ଉପସ୍ଥିତ ହେଲେ)
ଦୀନବନ୍ଧୁ, ଏହିଭିକ୍ଷା ଶ୍ରୀ ଚରଣେ ତୋର,
ହେଲ ଉପହାର,
ଅନୁଗ୍ରହ ଦୁହିତା ମୋର ନୀଳାରୂପବତୀ,
ଚରଣ ଙ୍କଙ୍କଶ ରୂପେ କଲେ ତୁ ଗ୍ରହଣ,
ଆଜଠାରୁ ପୂର୍ଣ୍ଣ ହେବ କାଳୀୟ ତପସ୍ୟା,
ନାଗ ଜନ୍ମ ଧନ୍ୟ ହେବ ମୋର ।
(ନୀଳା ନତଜାନୁ ହୋଇ ଚରଣରେ ପୁଷ୍ପାଞ୍ଜଳି ପ୍ରଦାନ
କଲେ ଓ ନାଗ ବାଳାଗଣ ସଙ୍ଗୀତ ଗାୟନ କଲେ).

ଗୀତ ।

ନାଗ କନ୍ୟାଗଣ —

ଜୟ ଜୟ ଯଦୁ ନନ୍ଦନ, ନିଖିଳ ଜଗତ ବନ୍ଦନ
ଜୟ ନବଘନ ବରନ ମୋହନ ରାଧିକା ହୃଦ ଚନ୍ଦନ ॥ ଘୋଷା ॥
କାମ ଦରପ ଖଣ୍ଡନ　　କାଳୀୟ ମଦ ଭଞ୍ଜନ
ଅଞ୍ଜନ ବରଣ କଞ୍ଜ ନୟନ, ଗୋପି ଜନ ମନ ରଞ୍ଜନ ॥

କୃଷ୍ଣ—

ଭକ୍ତ ମୋ ଜୀବ ଜୀବନ,　　ଭକ୍ତ ମୋହର ପ୍ରାଣ ଧନ
ମୁହିଁ ଚିରଦିନ ଭକ୍ତ ଅଧୀନ, ଭକ୍ତ ଦୁଃଖ କରେଁ ଖଣ୍ଡନ ॥

ନାଗ କନ୍ୟାଗଣ—

ନଟବର ଘନ ସୁନ୍ଦର  କେଳି କାନନ କୁଞ୍ଜର
ମଧୁର ମୁରଲୀ ବାଦନ ପର, ନାଶ ହୃଦ୍ ମୃଦ ସାଧନ ॥

କୃଷ୍ଣ—

ଭକତଭାବରେ ଯେବା ଭଜେ  କୃପାକରେଁ ତାକୁ କେଉଁ ଭାବେ
ଭକ୍ତ ମୋହର ପ୍ରାଣ ପ୍ରିୟତର ଭକ୍ତ ମୋ ହୃଦ ମଣ୍ଡନ ॥

( ଡ୍ରପ )




---

Printer — L. K. Mahapatra B. A.
Gopinath Press, Bhadrak, 1932.

# ଭଲ ଟାହୁଁ ଟା

## ପିଲାଙ୍କୁ

ହସାଇ, ଖେଳାଇ, ଶିଖାଇ, ଘଷାଡ଼ି ଆଳସ୍ୟ ଭଙ୍ଗ ।

ସରସ ବହି ପାଇଲେ ସେ ଆପେ ଆପେ ପଢ଼ି ମଣିଷ ହେବେ ।

## ଟିଙ୍ଗିଆଗାନା ।

ଚକଚକିଆ ଛପା - ରଙ୍ଗରଙ୍ଗିଆ ଛବି - କୌତୁକିଆ ଗୀତ

ପିଲାଙ୍କ ମନ ଲାଖି ବହି       ମୂଲ୍ୟ ଟ ୦ ।୵



## ପିଲାଙ୍କ କଥା ।

ସାନ ସାନ ପିଲାଙ୍କର ସରଳ ଜୀବନ କାହାଣୀ ।

ପିଲାଏ ପାଇଲେ ଛାଡ଼ିବେ ନାହିଁ ।   ମୂଲ୍ୟ ଟ ୦ ।୵



## କୁମାରୀ

ସ୍ନେହ ଝିଅଙ୍କୁ ଯୋଗ୍ୟ କରିବାର ଏକମାତ୍ର ବହି ।

ମଧୁର ରାଗ--ଲଳିତ ଭାଷା--ସୁନ୍ଦର ଭାବ ।

ବାଳିକାଙ୍କ ଅଦରର ଧନ । ମୂଲ୍ୟ ଟ ୦ ।୵



## ପିଲାଙ୍କ ଧର୍ମ ସଙ୍ଗୀତ ।

ସହଜ ନୀତି ବହି       ଟ ୦ ୵



ପ୍ରାପ୍ତିସ୍ଥାନ— ଗୋପୀନାଥ [illegible], [illegible]

[illegible]